# ଅଲଙ୍କାର ମଞ୍ଜରୀ

For Pre-University, First Year and
B. A. Examinations.


ସଙ୍କଳକ

ଅଧ୍ୟାପକ ଶ୍ରୀଧର ଦାସ, ଏମ୍. ଏ., ଡି. ଇଡ୍.

ରାଭେନ୍ସା କଲେଜ, କଟକ



ପରିବର୍ଦ୍ଧିତ ସଂସ୍କରଣ

୧୯୬୫

ପ୍ରକାଶକ—

ଶ୍ରୀ ଅଭିରାମ ମହାପାତ୍ର, ବି. ଏ.

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ମୂଲ୍ୟ—ଟ ୧.୫୦ ପଇସା

# Prescribed Course.

## Pre-University

ଅନୁପ୍ରାସ, ଯମକ, ଶ୍ଳେଷ, ଉପମା, ରୂପକ, ଉତ୍ପ୍ରେକ୍ଷା,
ବିରୋଧାଭାସ, ସ୍ୱଭାବୋକ୍ତି, ବ୍ୟତିରେକ,
ଅର୍ଥାନ୍ତରନ୍ୟାସ ।

## First Year

ବିଭାବନା, ବିଶେଷୋକ୍ତି, ସମାସୋକ୍ତି,
ବ୍ୟାଜସ୍ତୁତି, ଉଲ୍ଲେଖ, ଅନନ୍ୱୟ, ପ୍ରତୀପ,
କାବ୍ୟଲିଙ୍ଗ, ବକ୍ରୋକ୍ତି, ପ୍ରତିବସ୍ତୂପମା ।

## B. A.

ଅପହ୍ନୁତି, ସ୍ମରଣ, ସଙ୍କର, ସଂସୃଷ୍ଟି, ଦୀପକ, ନିଦର୍ଶନା,
ସହୋକ୍ତି, ବିନୋକ୍ତି, ଅସଙ୍ଗତି ।

(ନିମ୍ନୋକ୍ତ ପାଠ କେବଳ Honours ପାଇଁ)

ରସକୂଲ୍ୟା, କଳାହଂସକେଦାର, କୁମ୍ଭକାମୋଦୀ, ମାଳବ,
ବସନ୍ତ, ମଙ୍ଗଳଗୁର୍ଜ୍ଜରୀ, ଶଙ୍କରାଭରଣ ।

---

# ସୂଚୀ

# ସାଙ୍କେତିକ ଚିହ୍ନର ବ୍ୟାଖ୍ୟା

ସୁଢ଼ଳ—ସୁଢ଼ଳଦେବଙ୍କ ଅଳଙ୍କାର ବୋଧୋଦୟ ।

ସା: ଦ:—ବିଶ୍ୱନାଥ କବିରାଜଙ୍କ ସାହିତ୍ୟଦର୍ପଣ ।

ପ୍ରେ: ସୁ: ନି:—ଉପେନ୍ଦ୍ର ଭଞ୍ଜଙ୍କ ପ୍ରେମସୁଧାନିଧି ।

ବୈ: ବି:— ,, ବୈଦେହୀଶବିଳାସ ।

ର: ପ:— ,, ରସପଞ୍ଚକ ।

ଲା: ବ:— ,, ଲାବଣ୍ୟବତୀ ।

ଅ: ର: ତ:— ,, ଅବନା ରସ ତରଙ୍ଗ ।

ପ୍ର: ବ:—ଗଙ୍ଗାଧର ମେହେରଙ୍କ ପ୍ରଣୟବଲ୍ଲରୀ ।

କ: ସୂ:—କବିସୂର୍ଯ୍ୟ ବଳଦେବ ରଥଙ୍କ ରଚନା ।

ର: କ:—ଦୀନକୃଷ୍ଣଙ୍କ ରସ କଲ୍ଲୋଳ ।

ବି: ଚି:—ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ।

ତୁ: ସ୍ତ:—ରାଧାନାଥଙ୍କ ତୁଳସୀସ୍ତବକ ।

ଅ: ପ୍ର:—ଭକ୍ତକବି ମଧୁସୂଦନଙ୍କ ଅଯୋଧ୍ୟା ପ୍ରତ୍ୟାଗମନ ।

ଚମ୍ପୂ—କବିସୂର୍ଯ୍ୟ ବଳଦେବଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ।

ଦ: ବି:—ରାଧାନାଥଙ୍କ ଦଶରଥ ବିୟୋଗ ।

ମ: ଯା:— ,, ମହାଯାତ୍ରା ।

ମେ: ଦୂ:— ,, ମେଘଦୂତ ।

ଚ: ଭା:— ,, ଚନ୍ଦ୍ରଭାଗା ।

କେ: ଗୌ:— ,, କେଦାରଗୌରୀ ।

ନ: କେ:— ,, ନନ୍ଦିକେଶ୍ୱରୀ ।

ମ: ମ:—ଭକ୍ତଚରଣଙ୍କ ମଥୁରାମଙ୍ଗଳ ।

ଚନ୍ଦନହଜୁରି—ଚନ୍ଦନ ହଜୁରିଙ୍କ ରଚନା ।

ଉ: ରା: ଚ:—ଉତ୍ତର ରାମ ଚରିତ ।

କବିସୂର୍ଯ୍ୟ—କବିସୂର୍ଯ୍ୟ ବଳଦେବଙ୍କ ରଚନା ।

ବି: ରା:—ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣ ।

---

# ଅଲଙ୍କାର ମଞ୍ଜରୀ

ଶରୀରରେ ବଳୟ, କେୟୂର ଓ କଙ୍କଣ ପ୍ରଭୃତି ପରିଧାନ କରିବାଦ୍ୱାରା ଯେପରି ଶରୀରର ସୌନ୍ଦର୍ଯ୍ୟ ବୃଦ୍ଧି ପାଏ, 'ଉପମାଦିର ବ୍ୟବହାରଦ୍ୱାରା ସେହିପରି କାବ୍ୟର ରୁଚିରତା ସମ୍ପାଦିତ ହୋଇଥାଏ । ଏହି ଉପମା ପ୍ରଭୃତି କାବ୍ୟର 'ଅଲଙ୍କାର' ନାମରେ ଅଭିହିତ ହୁଅନ୍ତି । ଅଲଙ୍କାର ଦୁଇପ୍ରକାର; ଯଥା:—ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ।

ଯେଉଁଠାରେ ଶବ୍ଦର ରୁଚିରତା ହେତୁ କାବ୍ୟର ରୁଚିରତା ସମ୍ପାଦିତ ହୁଏ, ସେଠାରେ ଶବ୍ଦାଳଙ୍କାର ଅଛି ବୋଲି କୁହାଯାଏ । ସେହିପରି ଯେଉଁଠାରେ ଅର୍ଥର ରୁଚିରତା ଯୋଗୁଁ କାବ୍ୟର ରୁଚିରତା ସମ୍ପାଦିତ ହୁଏ, ସେଠାରେ ଅର୍ଥାଳଙ୍କାର ଅଛି ବୋଲି କୁହାଯାଏ

ଶବ୍ଦାଳଙ୍କାରଯୁକ୍ତ ରଚନାରେ ବ୍ୟବହୃତ ଶବ୍ଦ ପରିବର୍ତ୍ତେ ତଦର୍ଥକ ଅନ୍ୟ ଶବ୍ଦ ବ୍ୟବହାର କଲେ ଶବ୍ଦାଳଙ୍କାର ରହି ନ ପାରେ । ମାତ୍ର ଅର୍ଥାଳଙ୍କାର ଶବ୍ଦଗତ ନ ହୋଇ ଅର୍ଥଗତ ହୋଇଥିବାରୁ ଶବ୍ଦର ପରିବର୍ତ୍ତନ ହେଲେହେଁ ଏହାର ଅସ୍ତିତ୍ୱ ଲୋପ ପାଇ ନପାରେ ।

"ରମା ଶିଶିରେ, ଘୋର ନିଶିରେ
ଦୁଃଖ ରଶିରେ ଭାସି ।"

ଏହି ପାଦଟିରେ ଶିଶିରେ, ନିଶିରେ, ରଶିରେ ଏହି ଶବ୍ଦମାନଙ୍କର ବ୍ୟବହାରଦ୍ୱାରା ରଚନାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଅଛି । ଏଣୁ ଏହା ଶବ୍ଦାଳଙ୍କାରଯୁକ୍ତ ରଚନା ।

ଏହି ପାଦଟିରେ ଉପର୍ଯ୍ୟୁକ୍ତ ଶିଶିରେ, ନିଶିରେ ଓ ରଶିରେ ଶବ୍ଦମାନଙ୍କ ପରିବର୍ତ୍ତେ ଯଦି ଯଥାକ୍ରମେ ତଦର୍ଥକ "ଶୀତରେ, ରାତ୍ରିରେ, ସମୂହେ" ବ୍ୟବହାର କରାଯାଏ ତେବେ ଅର୍ଥର କୌଣସି ପରିବର୍ତ୍ତନ ହେବ ନାହିଁ । ମାତ୍ର "ରମା ଶୀତରେ, ଘୋର ରାତ୍ରିରେ ଦୁଃଖ ସମୂହେ ଭାସି" ଏହି ପାଦଟିରେ ରଚନାର ପୂର୍ବ ସୌନ୍ଦର୍ଯ୍ୟ ନାହିଁ । ଏହାର କାରଣ ଏହି ଯେ ଶିଶିରେ, ନିଶିରେ, ରଶିରେ ଶବ୍ଦଗୁଡ଼ିକୁ ଉଠାଇ ଦେବା ସଙ୍ଗେ ସଙ୍ଗେ ଶବ୍ଦାଳଙ୍କାର ଅନ୍ତର୍ହିତ ହୋଇଅଛି ।

"ଆଶା-ସୁମଧୁର ମଳୟ-ଅନିଳ
ହୃଦୟ ଉଲ୍ଲାସ ବହେ,
ହୃଦୟ-କୋକିଳ ପଞ୍ଚମ ତାନରେ
ନବ ଆଶା-କଥା କହେ ।"

କୁନ୍ତଳାକୁମାରୀଙ୍କ ଉଲ୍ଲିଖିତ କବିତାଂଶଟିକୁ ନିମ୍ନଲିଖିତରୂପେ ପରିବର୍ତ୍ତିତ କରା ଯାଇପାରେ ।

ଆଶା ମଧୁମୟ ମଳୟ ସମୀର
ହୃଦୟ ଆହ୍ଲାଦ ବହେ,
ଅନ୍ତର-କୋକିଳ ପଞ୍ଚମ ସ୍ୱରରେ
ନୂଆ ଆଶାବାଣୀ କହେ ।

ଏଥିରେ ସୁମଧୁର, ଅନଳ, ଉଲ୍ଲାସ, ହୃଦୟ, ତାନ, ନବ, କଥା ଏହି ଶବ୍ଦମାନଙ୍କ ପରିବର୍ତ୍ତେ ଯଥାକ୍ରମେ ତଦର୍ଥକ ମଧୁମୟ, ସମୀର, ଆହ୍ଲାଦ, ଅନ୍ତର, ସ୍ୱର, ନୂଆ, ବାଣୀ ଶବ୍ଦମାନଙ୍କୁ ବ୍ୟବହାର କରାଯାଇଅଛି । ଏ ଦୁଇ କବିତାଂଶକୁ ତୁଳନା କଲେ ଦେଖାଯିବ ଯେ ଉଭୟ ମଧ୍ୟରେ ଅର୍ଥଗତ ସୌନ୍ଦର୍ଯ୍ୟ ରହିଅଛି । ମୂଳ ରଚନାରେ କବି ଅର୍ଥର ସମାବେଶଦ୍ୱାରା ରଚନାର ଯେଉଁ ସୌନ୍ଦର୍ଯ୍ୟ ସାଧନ କରିଅଛନ୍ତି, ପରିବର୍ତ୍ତିତ ରଚନାରେ ମଧ୍ୟ ସେହି ସୌନ୍ଦର୍ଯ୍ୟ ରକ୍ଷିତ ହୋଇଅଛି । ତେଣୁ ଅର୍ଥାଳଙ୍କାର ଶବ୍ଦସାପେକ୍ଷ ନ ହୋଇ ଅର୍ଥସାପେକ୍ଷ ।

---

## ଶବ୍ଦାଳଙ୍କାର

### ଅନୁପ୍ରାସ (Alliteration) *

ରଚନାରେ ଏକ ବା ଏକାଧିକ ବ୍ୟଞ୍ଜନ ବର୍ଣ୍ଣର ପୁନଃ ପୁନଃ ବିନ୍ୟାସର ନାମ ଅନୁପ୍ରାସ । ତେଣୁ ଅନୁପ୍ରାସ ଅଳଙ୍କାରରେ ସ୍ୱରର ବୈଷମ୍ୟ ଥିଲେ କୌଣସି କ୍ଷତି ନାହିଁ ।

ଅନୁପ୍ରାସ ଅନେକ ପ୍ରକାର, ଯଥା:—ବୃତ୍ତ୍ୟନୁପ୍ରାସ, ଛେକାନୁପ୍ରାସ, ଲାଟାନୁପ୍ରାସ, ଶ୍ରୁତ୍ୟନୁପ୍ରାସ ଇତ୍ୟାଦି ।

### ବୃତ୍ତ୍ୟନୁପ୍ରାସ †

ଏକ ବା ଏକାଧିକ ବ୍ୟଞ୍ଜନବର୍ଣ୍ଣର ଏକବାର ବା ବହୁବାର ସ୍ୱରୂପତଃ ବା କ୍ରମତଃ ବା ଉଭୟତଃ ବିନ୍ୟାସର ନାମ ବୃତ୍ତ୍ୟନୁପ୍ରାସ ।

---

* ଅନୁପ୍ରାସଃ ଶବ୍ଦସାମ୍ୟଂ ବୈଷମ୍ୟେଽପି ସ୍ୱରସ୍ୟ ଯତ୍ [ ସା: ଦ: ]

† ଅନେକସ୍ୟୈକଧା ସାମ୍ୟମସକୃଦବାପ୍ୟନେକଧା
ଏକସ୍ୟ ସକୃଦପ୍ୟେଷ ବୃତ୍ତ୍ୟନୁପ୍ରାସ ଉଚ୍ୟତେ [ ସା : ଦ: ]

ଉଦାହରଣ—

(୧) ରସ ଶର ବେଦବୟସୀ ରୁଷିଲା
ବସି ଶିବ ଶିରେ ଅଭିଷେକ କଲା । ( ର:ଗ: )

ପ୍ରଥମ ଧାଡ଼ିରେ ରସ ଓ ଶର ପଦରେ ର ଏବଂ ସ ଏହି ବ୍ୟଞ୍ଜନବର୍ଣ୍ଣଦ୍ୱୟର ସ୍ୱରୂପତଃ ଏକବାର ସାମ୍ୟ ଅଛି । ସେହିପରି ଦ୍ୱିତୀୟ ଧାଡ଼ିରେ ବସି ଓ ଶିବ ପଦ ଦ୍ୱୟରେ ବ ଏବଂ ସ ର ସ୍ୱରୂପତଃ ଏକବାର ସାମ୍ୟ ଅଛି ।

(୨) ନବ ଯଉବନ ସୁଷମା ନଳ-ଦେହେ ପ୍ରକାଶ
ହେଲା ଆସି ଯଥା ସମୟେ କଣି ବାଲ୍ୟ ବୟସ ।
( ସଦ୍ଭୁଦୟାନନ୍ଦ )

ପ୍ରଥମ ଧାଡ଼ିରେ ନ ଓ ବ ଏବଂ ଦ୍ୱିତୀୟ ଧାଡ଼ିରେ ଯ ଓ ବ ବ୍ୟଞ୍ଜନବର୍ଣ୍ଣମାନଙ୍କର ଏକାଧିକବାର ବିନ୍ୟାସ ହୋଇଅଛି ।

(୩) ଜଳ ନିର୍ମଳରେ ଆଦର ଆଦରଶୁଁ ସାରୁଛି । ( ଲା:ବ: )

ଏଠାରେ ଦ ଓ ର ଏହି ବର୍ଣ୍ଣଦ୍ୱୟର କ୍ରମଭଙ୍ଗ ନ ହୋଇ ଏକବାର ମାତ୍ର ଆବୃତ୍ତି ହୋଇଅଛି ।

(୪) ନିକୁଞ୍ଜ ଗରଭେ ଧାରଣ
କରି ହରିଣଗଣ
ବିଳେ ବିଳେଶୟ ଚରଗେ
ଦେଇ ବରଗି ପୁଣ । (ସଦ୍ଭୁଦୟାନନ୍ଦ)

ଏଠାରେ ବିଳେ, ବିଳେଶୟ ପଦଦ୍ୱୟରେ 'ବ' ଓ 'ଳ' ର କ୍ରମତଃ ଏକବାର ଆବୃତ୍ତି ଏବଂ ବରଗେ, ବରଗି ପଦଦ୍ୱୟରେ ବ, ର, ଗ ଏହି ବର୍ଣ୍ଣତ୍ରୟର କ୍ରମତଃ ଏକବାର ଆବୃତ୍ତି ହୋଇଅଛି ।

(୫) କାନ୍ତ-ପ୍ରେମ ଯେବେ ସାଗର, ମୋ ପ୍ରେମ
ହେବ ତ ସରିତ ସର,
ସାଗର ଅଙ୍କକୁ ସରିତ ଯିବାକୁ
ନ ଥାଏ ତ ଅପସର । ( ପ୍ର: ବ: )

ଏହି ଉଦାହରଣରେ ସରିତ, ସର, ଅପସର ପଦମାନଙ୍କରେ ସ ଓ ର ବ୍ୟଞ୍ଜନବର୍ଣ୍ଣ ଦ୍ୱୟର କ୍ରମତଃ ଏକାଧିକବାର ଆବୃତ୍ତି ହୋଇଅଛି ।

(୬) ଉତ୍କଳ-କମଳା-ବିଳାସ-ଦୀର୍ଘିକା
ମରାଳମାଳିନୀ ନୀଳାମ୍ବୁ ଚିଲିକା । ( ଚିଲିକା )

ଏଥିରେ ମ, ଳ ବ୍ୟଞ୍ଜନବର୍ଣ୍ଣର ବହୁବାର ବିନ୍ୟାସ ହୋଇଅଛି ।

(୭) ଲୁଣି ମଣିଲିଣି ମଧୁଝରକୁ,
ଶୁଣି ତା ବିଷମ ବଂଶୀସ୍ୱରକୁ । (କ: ସ୍ମୃ:)

ପ୍ରଥମ ଧାଡ଼ିରେ ଲ, ଣ ଏହି ବ୍ୟଞ୍ଜନବର୍ଣ୍ଣ ଦ୍ୱୟର କ୍ରମତଃ ଆବୃତ୍ତି ହୋଇଅଛି ।

ଦ୍ୱିତୀୟ ଧାଡ଼ିରେ 'ଶ'ର ଏକାଧିକବାର ଆବୃତ୍ତି ହୋଇଅଛି ।

ଏସବୁ ଉଦାହରଣମାନଙ୍କରେ ଶ, ଷ, ସ, ଓ ଯ, ଜ ମଧ୍ୟରେ ଥିବା ଧ୍ୱନିଗତ ପାର୍ଥକ୍ୟକୁ ( ଉଚ୍ଚାରଣ ସାମ୍ୟ ହେତୁ ) ଗ୍ରହଣ କରାଯାଇନାହିଁ ।

(୮) ବସିବ ଶବ ଶିରସି ରସି ନିଶାକରେ ଯେ (ବୈ:ବି:)

ଏଠାରେ ବ, ଶ, ର ଏହି ବର୍ଣ୍ଣମାନଙ୍କର ସ୍ୱରୂପତଃ ଓ କ୍ରମତଃ ଆବୃତ୍ତି ହୋଇଅଛି ।

(୯) ପାଣ୍ଡବପ୍ରିୟ ଦଣ୍ଡ ଛକ ନ ଦୋଷେ,
ଦାଣ୍ଡକୁ ଏକଥା କେମନ୍ତ ଘୋଷେ,

ଗୁଣ୍ଡରେ ମଇଷଛନେ ଆପଣ
କାଣ୍ଡକରେ ନେଇ ବାଳୀର ପ୍ରାଣ,
ତାଣ୍ଡବ ନୃତ୍ୟକାଂସ୍କଙ୍କ ହେ,
ପଣ୍ଡ କରଦେଲ ବସ୍ତ୍ର କୂଟ ମାୟା,
ଲଗାଇ ଦେଇ ଭେଳକ ହେ । ( ଚନ୍ଦନ ହଜୁର )

ଏହି ଉଦାହରଣରେ 'ଣ୍ଡ' ବର୍ଣ୍ଣଟିର ବହୁବାର ଆବୃତ୍ତି ହୋଇଥିବାରୁ ରଚନାର ମାଧୁର୍ଯ୍ୟ ଯଥେଷ୍ଟ ବୃଦ୍ଧି ପାଇଅଛି ।

(୧୦) ଦେଖିଲା ବାଳାକୁ        ସୁପ୍ରେମଶୀଳାକୁ
ଢଳାକଜ୍ଜଳ କୁନ୍ତଳାକୁ,
ଲମ୍ବାଇ ଗଳାକୁ        ସୁମୋତି ମାଳାକୁ
ବୃନ୍ଦେ ଯେ ଥିଲା ଚପଳାକୁ ।
ବାଳାରେ, କରଭର ଦେଇ ଶିଳାକୁ
ନାହାର ଉପରେ ବଜାଉଥିଲ ତା
ବାଜେଣି ନୂପୁର ବଳାକୁ ।

ଏଠାରେ 'ଳ' ବର୍ଣ୍ଣଟିର ବହୁବାର ଆବୃତ୍ତି ହୋଇଅଛି ।

## ଲାଟାନୁପ୍ରାସ *

ବକ୍ତାଙ୍କ ପ୍ରଭୃତିରେ ଭେଦ ଥାଇ ମଧ୍ୟ ଶବ୍ଦ ଓ ଅର୍ଥର ପୁନରାବୃତ୍ତି ହେଲେ ଲାଟାନୁପ୍ରାସ କୁହାଯାଏ ।

ଉଦାହରଣ :—

(୧ ) ମନ୍ଦାର ମନ୍ଦାର        ସାଗର ସାଗର
ମେରୁଗିରି ମେରୁଗିରି,

* ଶବ୍ଦାର୍ଥୟୋଃ ପୌନରୁକ୍ତ୍ୟଂ ଭେଦେ ତାତ୍ପର୍ଯ୍ୟମାତ୍ରତଃ
ଲାଟାନୁପ୍ରାସ ଇତ୍ୟୁକ୍ତଃ—[ସା.ଦ.]

ଔଦାର୍ଯ୍ୟେ, ଗାମ୍ଭୀର୍ଯ୍ୟେ,        ଧଇର୍ଯ୍ୟେ ସେମାନେ
ହେବେ କି ଶ୍ରୀରାମ ସରି ?

ଏଠାରେ ମନ୍ଦାର, ସାଗର ଓ ମେରୁଗିରି ଶବ୍ଦମାନ ଦୁଇଥର ଆବୃତ୍ତ ହୋଇ ଅଛନ୍ତି । ଦେଖାଯିବାରୁ ଆବୃତ୍ତ ସେହି ସେହି ଶବ୍ଦମାନଙ୍କ ଅର୍ଥରେ କିଛି ପରିବର୍ତ୍ତନ ନାହିଁ । ତଦ୍ଦ୍ୱାରା କେବଳ ସେମାନଙ୍କର ସ୍ୱଭାବସିଦ୍ଧ ଗୁଣଗୁଡ଼ିକ ସୂଚିତ ।

(୨)  ବିଷମବିଶିଖ ବିଶିଖକୁ ଲକ୍ଷ
ସେ ହୋଇଲା ଏବେ ଆସି । (ଲା:ବ:)

ଏଠାରେ 'ବିଶିଖ' ଶବ୍ଦଟି ଅର୍ଥସାମ୍ୟ ଥାଇ ଆବୃତ୍ତି କରାଯାଇଅଛି ।

## ଶ୍ରୁତ୍ୟନୁପ୍ରାସ*

ତାଳୁ, ଦନ୍ତ ପ୍ରଭୃତି କୌଣସି ଏକସ୍ଥାନରୁ ଉଚ୍ଚାରିତ ବର୍ଣ୍ଣମାନଙ୍କର ବିନ୍ୟାସ ହୋଇଥିଲେ ଶ୍ରୁତ୍ୟନୁପ୍ରାସ ହୁଏ ।
ଉଦାହରଣ :—

ପୁଷ୍ପପତି ପ୍ରଭାପ୍ରଭ ଭ୍ରମୁଭବେ ଭୁବ
ଧାମବାଷ୍ପଭବ ଉଭବେ ଭବ ଭାବ ଭାବ । (ପ୍ରେ:ସୁ:ନି:)

ଏଥିରେ କେବଳ ଓଷ୍ଠ୍ୟବର୍ଣ୍ଣମାନଙ୍କର ବ୍ୟବହାର ହୋଇଅଛି । ଏଣୁ ଏଠାରେ ଶ୍ରୁତ୍ୟନୁପ୍ରାସ ଅଳଙ୍କାର ।

---

* ଉଚ୍ଚାର୍ଯ୍ୟତ୍ୱାଦ୍ୟଦୈକତ୍ର ସ୍ଥାନେତାଲୁରଦାଦିକେ
ସାଦୃଶ୍ୟଂ ବ୍ୟଞ୍ଜନସ୍ୟୈବ ଶ୍ରୁତ୍ୟନୁପ୍ରାସ ଉଚ୍ୟତେ । [ସା:ଦ:]

## ଛେକାନୁପ୍ରାସ *

ସସ୍ୱର ବ୍ୟଞ୍ଜନବର୍ଣ୍ଣ ସମୂହର ଏକ ବା ଏକାଧିକବାର ସାମ୍ୟ ଥିଲେ ଛେକାନୁପ୍ରାସ ହୁଏ ; ଯଥା :—

(୧) ଭବେ ବଞ୍ଚିଲେ ଏକାଳକୁ, କଥା ଥିବ କାଳକାଳକୁ ।

ଏହି ଧାଡ଼ିରେ 'କାଳ' ଏହି ବର୍ଣ୍ଣ ଦ୍ୱୟ ଆବୃତ୍ତ ।

(୨) କନ୍ଦର୍ପ ଦର୍ପ ହୋଇଲା ଅତିଶୟ

କୁସୁମ ବିଶିଖ କରିବାକୁ ଲକ୍ଷ କାମୀ କାମିନୀଙ୍କର ଭୟ । (ର:କ:)

ଏଠାରେ ଦର୍ପ, କାମୀ ଶବ୍ଦଦ୍ୱୟ ଆବୃତ୍ତ ।

ବୃତ୍ତି, ଛେକ ଓ ଲାଟ ଏହି ତିନୋଟି ଅନୁପ୍ରାସର ଲକ୍ଷଣ ସମ୍ବନ୍ଧେ ଆଳଙ୍କାରିକମାନଙ୍କ ମଧ୍ୟରେ ମତଭେଦ ପରିଦୃଷ୍ଟ ହୁଏ ।

## ଅନ୍ତ୍ୟାନୁପ୍ରାସ †

ପଦ ବା ପାଦର ପ୍ରାନ୍ତରେ ଯଥାସମ୍ଭବ ଅନୁସ୍ୱାର ବିସର୍ଗାଦି ସ୍ୱର ସହିତ ବ୍ୟଞ୍ଜନବର୍ଣ୍ଣର ଆବୃତ୍ତି ହେଲେ ଅନ୍ତ୍ୟାନୁପ୍ରାସ ହୁଏ । ଯଥା :—

(୧) ଏମନ୍ତ ମନେ ପ୍ରସରି ନାଗ୍ରି କି ନାଗ୍ରି ସେ ସରି
ଧଇର୍ଯ୍ୟ-କରି-କେଶରୀ ନୁହେ ବିସ୍ମରି,
ପାଶେ ଥିଲେ ହନ ସରି ତାପମାନ ଉପସରି
ସେ ତ ରସିକା କେଶରୀ, ମୁଁ କି ତା ସରି ।
କଥନେ ଯା ଗୁଣ ନ ସରି,
ସ୍ୱର୍ଗେ ବଡ଼ ଭୋଗ ହୋଇ ସେ ଅପସରୀ । (ପ୍ରେ:ସୁ:ନି:)

---

* ଛେକୋ ବ୍ୟଞ୍ଜନସଂଘସ୍ୟ ସକୃତ୍ ସାମ୍ୟମନେକଧା । [ସା:ଦ:]

† ବ୍ୟଞ୍ଜନଂ ଚେଦ୍ ଯଥାବସ୍ଥଂ ସହାଦ୍ୟେନ ସ୍ୱରେଣ ତୁ
ଆବର୍ତ୍ତ୍ୟତେଽନ୍ତ୍ୟଯୋଜ୍ୟତ୍ୱାଦନ୍ତ୍ୟାନୁପ୍ରାସ ଏବ ତତ୍ । [ସା:ଦ.]

(୨)　　ରାଧା ଧରି ସଖୀ କର
　　ବୋଲନ୍ତି ଆକଟ ଆଉ ନ କର ଗୋ,
　　ଲାଜ ଭୟ ଗୁଡ଼ାଇ ନକର, ସଜନୀ ଗୋ । (ବ: ଚ:)

ଏ ସ୍ଥଳମାନଙ୍କରେ ପାଦର ଅନ୍ତରେ ସସ୍ୱରବ୍ୟଞ୍ଜନର ଆବୃତ୍ତି ହୋଇଅଛି ।

(୩)　　ହା ହା ସେ ନରେନ୍ଦ୍ର କୁମାରୀ,
　　ଅବନୀଶିରୀ ସୁକୁମାରୀ,
　　ପଲ୍ୟଙ୍କ ଅଙ୍କେ ଶୋଇଥିଲା,
　　ସୁକୁତ ଦୂଖ ଭେଟାଇଲା (ଲା:ବ:)

ଏଠାରେ ପାଦର ଅନ୍ତରେ ସସ୍ୱରବ୍ୟଞ୍ଜନର ଆବୃତ୍ତି ହୋଇ-ଅଛି ।

(୪)　ମଙ୍ଗଳେ ଅଇଲା ଊଷା,　　ବକଚରାଜୀବ-ଦୃଶା,
　　ଜାନକୀ-ଦର୍ଶନ-ତୃଷା ହୃଦୟେ ବହି,
　କର ପଲ୍ଲବେ ମାହାର-　　ମୁକ୍ତା ଧରି ଉପହାର
　　　ସତୀଙ୍କ ବାସ ବାହାର ପ୍ରାଙ୍ଗଣେ ରହି,
　　　　କଲକଣ୍ଠ କଣ୍ଠେ କହିଲା,
　　ଦରଶନ ଦିଅ ସତି, ରାତି ପାହିଲା । (ତପସ୍ୱିନୀ)
　ଏଠାରେ ପାଦାନ୍ତ ସସ୍ୱରବ୍ୟଞ୍ଜନର ଆବୃତ୍ତି ।

ମିତାକ୍ଷର ଛନ୍ଦରେ ଲିଖିତ କବିତା ମାତ୍ରେ ଅନ୍ତ୍ୟାନୁପ୍ରାସର ଉଦାହରଣ ।

ସଂସ୍କୃତରେ ଅକ୍ଷରମିତତା ଅବଶ୍ୟ କରଣୀୟ ନୁହେଁ । ତେଣୁ ଯେଉଁଠାରେ ଶ୍ଳୋକର ପଦାନ୍ତରେ ବା ପାଦାନ୍ତରେ ଅକ୍ଷରମିତତା

ରକ୍ଷା କରାଯାଇଥାଏ ସେଠାରେ ଅନ୍ତ୍ୟାନୁପ୍ରାସ ହେଲା ବୋଲି କୁହାଯାଇଥାଏ । ମାତ୍ର ଓଡ଼ିଆରେ ସବୁ ପ୍ରାଚୀନ କବିତା ମିତ୍ରାକ୍ଷର ଛନ୍ଦରେ ଲିଖିତ । ତେଣୁ ପ୍ରତ୍ୟେକ କବିତାରେ ଅନ୍ତ୍ୟାନୁପ୍ରାସ ଦେଖିବାକୁ ମିଳେ । ଅଳ୍ପ କେତେ ବର୍ଷ ହେଲା ଅମିତ୍ରାକ୍ଷର ଛନ୍ଦ ଓଡ଼ିଆ କବିତାରେ ପ୍ରବେଶ କରିଅଛି ।

## ଯମକ *

ଏକ ଆକାର ବିଶିଷ୍ଟ ଅଥଚ ଭିନ୍ନ ଭିନ୍ନ ଅର୍ଥବୋଧକ ଶବ୍ଦ-ମାନଙ୍କର କ୍ରମରେ ଆବୃତ୍ତିର ନାମ ଯମକ । ବ୍ୟବହାରର ସ୍ଥାନ ଭେଦରେ ଏହା ଅନେକ ପ୍ରକାର ହୋଇପାରେ । ଏଥିରେ ଶ, ଷ, ସ ର ଓ ଜ, ଯ ର ପ୍ରଭେଦ ଧର୍ତ୍ତବ୍ୟ ନୁହେଁ ।

**ଆଦ୍ୟ ଯମକ:—**

(୧) ହସନ୍ତ ରସେ ହସନ୍ତ ରସେ ମିତ ଆଗରେ ବସି
ଗୁଣି ତିଳକ ଗୁଣି ତିଳକ ଯୁଗ ହୋଇଲା ଆସି (ବ·ଚ·)

(୨) ଶ୍ରବଣ ଧୀରେ ଶ୍ରବଣ ଧୀରେ ଲଭିବ ମହାନନ୍ଦ
ଭବମୀରତ ଭବ ନିରତ ହୋଇ ପରମାନନ୍ଦ (ବ·ଚ.)

(୩) ଲକ୍ଷଣ ଲକ୍ଷଣବନ୍ତ ଯା' ପାଦ ସେବେ
ଭଞ୍ଜି ଭଞ୍ଜି ବୀରବର ସନ୍ତାପ ଏବେ (ପ୍ରେ.ସୁ.ନି.)

(୪) ନବରସେ ନବରସେ ବଳିଲା ମନ
ଆର ଆର ଛନ୍ଦେ ତା ଶୁଣିବ ସୁଜନ । (ବ·ଚ·)

ସ୍ଥଳ ବିଶେଷରେ ପାଦମାନଙ୍କର ଆଦ୍ୟରେ ଏକ ବା ଏକାଧିକ ପଦ ଆବୃତ୍ତ ହେଲେ ମଧ୍ୟ ଆଦ୍ୟ ଯମକ ହୁଏ ।

---

* ସତ୍ୟର୍ଥେ ପୃଥଗର୍ଥାୟାଃ ସ୍ୱରବ୍ୟଞ୍ଜନସଂହତେଃ
କ୍ରମେଣ ତେନୈବାବୃତ୍ତିର୍ଯମକଂ ବିନିଗଦ୍ୟତେ । [ସା:ଦ:]

ଯଥା:—(୧) ବଲ୍ଲବର ସାର ବଳମ୍ବ ଶୁଣି
ବଲ୍ଲବସ୍ତ୍ରୀ ହେଉଁ ରମଣୀମଣି
ବଲ୍ଲବସ୍ତ୍ରୀ-ଚିତ୍ତ ଘୋଟିଲା ତ୍ରାସେ
ବଲ୍ଲବ-ସ୍ତ୍ରୀଙ୍କରୁ ନିଦ୍ରା ନ ଆସେ । (ବୈ: ବି:)

(୨) ବରଜୀବ-ରସେ ଦେଇ ମାନସ
ବରଜ ବରଷେ ଅମେଧ ତ୍ରାସ; (କବିସୂର୍ଯ୍ୟ)

**ମଧ୍ୟ ଯମକ:—**

(୧) ଚନ୍ଦ୍ରକୁ କହେ କୁମାର ମାଉକୁ କି
ଏହି ନିକଟେ ଲଗାଇବ,
ଥିବ ଜୀବ ଜୀବ-ବଲ୍ଲଭି ଲଭିବା
ଯାଏ କି ଭାଗ୍ୟ ଦିଶାଇବ । (ପ୍ରେ: ସୁ: ନି:)

(୨) ନବୀନ ଜୀମୂତ ଜୀମୂତସୁତା କି ଏ ଉଦିତ ?
ଏ ମୀନ କମଳ କମଳ-ବଦନ ବନ୍ଧୁ କେମନ୍ତ । (ଲ: ବ:)

**ପ୍ରାନ୍ତ ଯମକ:—**

(୧) ମାନବେ ହିମରୁ ଲୋକନ କରି
ଏକାଳେ ବିଦେଶ ତ ଲୋକ ନ କର ।
କରିବ ନାହିଁ କୁହେ ରସିକବର
କାନ୍ତା ମୋ ଏଥି ଭାବେ ରସିକ ବର ।
(ପ୍ରେ: ସୁ: ନି:)

(୨) ଉଠି ଯେସନେ ଜଳ ଧାର ପଶ୍ଚିମ ଆଶାରେ,
ଅସ୍ତାଚଳ ପ୍ଲାବି ଦିଏ ଅଜସ୍ର ଆସାରେ ।
(ତପସ୍ୱିନୀ)

(୩) ସେ ଆଲୋକ-ସୁଧା ଲଭି ବସୁଧା
ଦିଶେ ଶୋଭାମୟୀ ସୁଭାବ-ଶୁଦ୍ଧା । (ଶୋଭା)
(୪) ବଣ ପ୍ରକାଶିବ ସୁମନସର ସୁମନସର
ମହୀକି ଆଣିଲା ସୁମନସର ସୁମନସର । (ଲା: ବ:)

**ଆଦ୍ୟ-ପ୍ରାନ୍ତ ଯମକ:—**

ବସନ୍ତରେ ବିରହୀ ଅବଶ,
ବସନ୍ତଦୂତଭାଷୀରେ ବଶ
ବସଇ ଉଠଇ ପିକକୁ କହଇ
ଯୁଗ ସମ ରଜନୀ ଦିବସ, ହେ କୋକିଳ । (ପ୍ରେ:ସୁ:ନି:)

**ମାଳ ଯମକ:—**

କୌଣସି ରଚନାରେ ଯମକ ମାଳାବଦ୍ଧ ଭାବରେ ରହିଲେ ସେଠାରେ ମାଳ ଯମକ ହୁଏ; ଯଥା:—

(୧) ଧୀରେ ଧୀରେ ଧୀରେ ଦେନ ଏଥି ଦେଇ ଶ୍ରୁତି
ଧର ଧର ଧରଣୀ-ଶୋଭିଙ୍କି କହୁଛନ୍ତି । (ବୈ:ଶି:)
(୨) ଦେଖରେ ନଳିନୀ ନଳିନୀ ନଳିନୀରେ ଶୋଭିତ,
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ପୂରିତ । (ଲା:ବ:)

**ନିଭଙ୍ଗ ବା ନିବୃତ୍ତ ଯମକ :—**

ରମା ଶିଶିରେ ଘୋର ନିଶିରେ ଦୁଃଖ ରାଶିରେ ଭାସି,
ବସି ଏକାନ୍ତ ମାନସେ କାନ୍ତ ସ୍ୱରୂପ କାନ୍ତ ଘୋଷି ।
(ପ୍ରେ: ସୁ: ନି:)

**ଯୋଡ଼ ଯମକ:—**

ଘେନ ଘନକାଳ କାଳ ମଣି ବିଦ୍ୟୁଜ୍ଜାଳ ଜାଳ
ଅଗ୍ନିବୃଷ୍ଟି ମହୋଜ୍ଜ୍ୱଳ ଜଳ,
ରସିକ ବିକଳ କଲନା କ ବୋଲେ ଚଳ ଚଳ
ପ୍ରିୟା ପାଶେ ଖତ ମାଳ ମାଳ ହେ । (ପ୍ରେ:ସୁ:ନି:)

**ସଭଙ୍ଗ ଯମକ: –**

(୧) ଖରେ ହଂସ ଗତି ରହେ କାନ୍ତ ଆଲୋକରେ,
ଖ-ରେ ହଂସ-ଗତି ରହେ କାନ୍ତ ଆଲୋକରେ ।
(୨) ଅ-ନ୍ଧମକର ତାପ ନାଶେ ଶୋଭି ସାରସ ଚନ୍ଦେ,
ଅନ୍ଧ-ମକର ତାପ ନାଶେ ଶୋଭି ସାରସ-ଚନ୍ଦେ ।(ଲ:ବ:)
(୩) ରମ୍ଭା ଉରୁବଶୀ ବାର ଆଣିକ ଲୋକରେ,
ରମ୍ଭା ଉରୁ ବସିବାର ଆଣିକ ଲୋକରେ ।

## ଅନୁପ୍ରାସ ଓ ଯମକର ପ୍ରଭେଦ

ଅନୁପ୍ରାସ ଓ ଯମକ ମଧ୍ୟରେ ପ୍ରଧାନ ପାର୍ଥକ୍ୟ ଏହି ଯେ ଅନୁପ୍ରାସରେ ବ୍ୟଞ୍ଜନ ବର୍ଣ୍ଣର ଆବୃତ୍ତି ହେତୁ ଶବ୍ଦସାମ୍ୟ ଥାଏ; କିନ୍ତୁ ଯମକରେ ଶବ୍ଦର ଆବୃତ୍ତି ହୋଇଥାଏ ।

## ଶ୍ଳେଷ (Paronomasia) *

ବାକ୍ୟ ମଧ୍ୟରେ ଉଚ୍ଚାରଣବଶତଃ ଅଭିନ୍ନ ଗୋଟିଏ ପଦର ଏକାଧିକ ଅର୍ଥରେ ପ୍ରୟୋଗର ନାମ ଶ୍ଳେଷାଳଙ୍କାର । ଯେଉଁ ପଦ

* ଶ୍ଳିଷ୍ଟୈଃ ପଦୈରନେକାର୍ଥାଭିଧାନେ ଶ୍ଳେଷ ଇଷ୍ୟତେ । [ସା:ଦ:]

ଏକାଧିକ ଅର୍ଥରେ ପ୍ରଯୁକ୍ତ ହୋଇଥାଏ ତାହାକୁ ଶ୍ଳିଷ୍ଟ ପଦ କୁହା-ଯାଏ । ଶ୍ଳେଷାଳଙ୍କାର ତ୍ରିବିଧ—ଅଭଙ୍ଗ, ସଭଙ୍ଗ, ସଭଙ୍ଗାଭଙ୍ଗ । ଉଦାହରଣ:—

(୧) ବାବୁ ନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହର କାନନ କର ଆଲିଙ୍ଗନକୁ । (ବୈ: ବି:)

ପ୍ରଥମ ଧାଡ଼ିରେ ଅଭଙ୍ଗ ଶ୍ଳେଷ ହୋଇଅଛି । କାରଣ କୌଣସି ପଦର ଭଙ୍ଗ ନ ହୋଇ 'ନାକଶିରୀ ଦାନ'ର ଦୁଇଟି ଅର୍ଥ ପ୍ରକାଶିତ ହେଉଅଛି । ଗୋଟିଏ ଅର୍ଥରେ ନାକ = ସ୍ୱର୍ଗ, ଶିରୀ = ଐଶ୍ୱର୍ଯ୍ୟ, ଦାନ = ଦେବା । ଅପରଅର୍ଥରେ ନାକ = ନାସା, ଶିରୀ = ସୌନ୍ଦର୍ଯ୍ୟ, ଦାନ = ଛେଦନ ।

ଦ୍ୱିତୀୟ ଧାଡ଼ିରେ ସଭଙ୍ଗ ଶ୍ଳେଷ । ଗୋଟିଏ ଅର୍ଥରେ କାନନ (ରେ) ବିହର, ଆଲିଙ୍ଗନକୁ କର । ଅନ୍ୟ ଅର୍ଥରେ କାନ (କର୍ଣ୍ଣେ-ନ୍ଦ୍ରିୟକୁ) ବି (ବିଶେଷରେ) ହର (ହରଣ କର); ଆଲିଙ୍ଗନକୁ ନ କର । ଏଥିରେ ପଦର (କାନ ନ, ବି ହର) ଭଙ୍ଗ ହେବାରୁ ଏହି ଦ୍ୱିତୀୟ ଅର୍ଥ ବାହାରିଲା । ତେଣୁ ଏଠାରେ ସଭଙ୍ଗ ଶ୍ଳେଷ ।

(୨) ବନ୍ଦଇ ଦୀନବାନ୍ଧବ ହରି, ଯେ ତମଚନ୍ଦ୍ର ଖଣ୍ଡନକାରୀ,
ସଦା କମଳାନନ୍ଦ ବିସ୍ତାରି, ସୁଖାବେ ଭିନ ଯେ ।
ବିଭୁ ଅନନ୍ତ ଅଙ୍କବିହାରୀ, କରି ପ୍ରତାପ ଯାରି ସଞ୍ଚରି,
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବିଇନତେୟୁ ଯା ଅଗ୍ରତେ ସ୍ଥିତ ଯେ,
ବଇକୁଣ୍ଠ ପକ୍ଷକ ଲୋକ ତୋଷିତ ଯେ,

ପ୍ରକାଶ ଅଖଣ୍ଡିତମଣ୍ଡଳେ, ସିଂହଭାବରେ କ୍ରୀଡ଼ିତ କାଳେ,
ଭବେ ତରଣି ହୋଇ ମଞ୍ଜୁଳେ, ଗିରି ଉଦିତ ଯେ ।
(ବୈ: ବି:)

ବୈଦେହୀଶବିଳାସର ପ୍ରଥମ ଛାନ୍ଦର ଏହି ଆଦ୍ୟ ପଦରେ କବିବର ଉପେନ୍ଦ୍ର ଭଞ୍ଜ ଶ୍ଳେଷାଳଙ୍କାର ପ୍ରୟୋଗରେ ବିଷ୍ଣୁ ଓ ସୂର୍ଯ୍ୟ ଉଭୟଙ୍କର ବନ୍ଦନା କରିଅଛନ୍ତି ।

ବିଷ୍ଣୁଙ୍କ ପକ୍ଷରେ:—

ଯେ ତମ ଚୟ(ଅଜ୍ଞାନ ସମୂହ)ଖଣ୍ଡନ କରନ୍ତି, ଯେ ସଦା କମଳା (ଲକ୍ଷ୍ମୀ)ଙ୍କର ଆନନ୍ଦକୁ ବିସ୍ତାର କରନ୍ତି, ସ୍ୱଭାବରେ (ପ୍ରକୃତରେ)ଯେ ଇନ (ପ୍ରଭୁ ଶ୍ରେଷ୍ଠ) ଅଟନ୍ତି, ଯେ ବିଭୁ ଅନନ୍ତ (ଶେଷଦେବଙ୍କ) ଅଙ୍କରେ ବିହାର (କ୍ରୀଡ଼ା) କରନ୍ତି; ଯାହାଙ୍କର କର ପ୍ରତାପ(ବାହୁ-ବଳ) ସଞ୍ଚରେ ନିଶାଚର (ରାକ୍ଷସ) ମାନଙ୍କର ଉଲ୍ଲାସକୁ ହରଣ କରିଅଛି, ଯାହାଙ୍କୁ ସୁମନ (ଦେବତାମାନେ) ପୂଜା କରନ୍ତି, ବୈନତେୟ (ଗରୁଡ଼) ଯାହାଙ୍କର ଅଗ୍ରତେ ସ୍ଥିତ ଅଟନ୍ତି, ଯେ ବୈକୁଣ୍ଠ ପକ୍ଷକ, ଲୋକତୋଷିତ (ବୈକୁଣ୍ଠ ନିବାସୀ ଓ ଭକ୍ତ-ମାନଙ୍କର ତୋଷବିଧାତା), ଅଖଣ୍ଡିତ ମଣ୍ଡଳରେ ଯାହାଙ୍କର ପ୍ରକାଶ (ଯେ ଚରାଚର ବ୍ରହ୍ମାଣ୍ଡରେ ବ୍ୟାପି ରହି ଅଛନ୍ତି), କାଳେ (ଏକ ସମୟରେ) ଯେ ସିଂହଭାବରେ (ନୃସିଂହ ରୂପରେ) କ୍ରୀଡ଼ିତ (ଲୀଳା କରିଥିଲେ), ଯେ ଭବେ ମଞ୍ଜୁଳେ ତରଣୀ ହୋଇ ଅଛନ୍ତି (ସଂସାର ସାଗରର ନୌକା ସ୍ୱରୂପ), ଯେ ଗିରିରେ (ନୀଳାଚଳରେ) ଉଦିତ (ପ୍ରକଟିତ) ହୋଇଅଛନ୍ତି, ମୁଁ ସେହି ଦୀନବାନ୍ଧବ (ଦରିଦ୍ରର ସହାୟ) ହରି (ବିଷ୍ଣୁ)ଙ୍କୁ ବନ୍ଦନା କରୁଅଛି ।

ସୂର୍ଯ୍ୟଙ୍କ ପକ୍ଷରେ:—

ଯେ ତମଚଣ୍ଡ (ଅନ୍ଧକାର ସମୂହ) ଖଣ୍ଡନ କରନ୍ତି, ସଦା କମଳ (ପଦ୍ମ)ର ଆନନ୍ଦକୁ ବିସ୍ତାର କରନ୍ତି, ଯେ ସ୍ୱଭାବରେ ଇନ (ଇନ ନାମରେ ଖ୍ୟାତ), ଯେ ଅନନ୍ତ ଅଙ୍କରେ (ଆକାଶ ଦେଶରେ) ବିହାର କରନ୍ତି, ଯାହାଙ୍କର କର ପ୍ରତାପ (କିରଣର ତେଜ) ସଞ୍ଚରଣ କରି ନିଶାଚର (ପେଚକାଦି)ଙ୍କର ଉଲ୍ଲାସକୁ ହରଣ କରେ, ଯାହାଙ୍କୁ ସୁମନ (ପଣ୍ଡିତମାନେ) ପୂଜା କରନ୍ତି, ବୈନତେୟ(ବିନତା ନନ୍ଦନ ଅରୁଣ) ଯାହାଙ୍କ ଅଗ୍ରତେ ସ୍ଥିତ, ଯେ ବୈକୁଣ୍ଠ ପକ୍ଷକ (ଇନ୍ଦ୍ର ଯାହାଙ୍କର ସହାୟ), ଯେ ଲୋକ ତୋଷିତ (ଲୋକଙ୍କଦ୍ୱାରା ପୂଜିତ), ଯେ ଅଖଣ୍ଡିତ ମଣ୍ଡଳରେ ବିକାଶ(ଯେ ଗୋଲାକାରରେ ପ୍ରକାଶିତ), ଯେ ସିଂହଭାବରେ କାଳେ ହ୍ରୀଡ଼ିତ (ଯେ ସିଂହରାଶିରେ ଏକ ସମୟରେ ଅବସ୍ଥାନ କରନ୍ତି), ଯେ ଭାବରେ ମଞ୍ଜୁଳଭାବରେ ତରଣି (ସୂର୍ଯ୍ୟ) ହୋଇଅଛନ୍ତି, ଯେ ଗିରିରେ (ଉଦୟ ପର୍ବତରେ) ଉଦିତ ହୁଅନ୍ତି, ମୁଁ ସେହି ଦିନ (ଦିବସ) ବାନ୍ଧବ ହରି (ସୂର୍ଯ୍ୟ)ଙ୍କୁ ବନ୍ଦନା କରୁଅଛି ।

ଏଠାରେ ଦିନବାନ୍ଧବ, ହରି, ତମଚଣ୍ଡ, କମଳାନନ୍ଦ, ଇନ, ଅନନ୍ତ,ନିଶାଚର,ସୁମନ, ବୈନତେୟ, ବୈକୁଣ୍ଠପକ୍ଷକ, ଅଖଣ୍ଡିତ-ମଣ୍ଡଳ, ସିଂହ, ତରଣୀ ପଦଗୁଡ଼ିକ ଶ୍ଳିଷ୍ଟ ଅର୍ଥାତ୍ ଏକାଧିକ ଅର୍ଥରେ ବ୍ୟବହୃତ ।

(ଗ) ପାଣିଗ୍ରହଣରୁ ବୁଝିଅଛୁ କାଲି
ସ୍ୱଭବେ ତୁମ୍ଭେ ଉଦାର,
ବାହୁଲେ ମାତର କହୁଅଛୁ ଆମ୍ଭେ
ମୁନିକନ୍ୟା ହେ ଉଦାର । (ପ୍ର: ବ:)

ହେ ଉଦାର, ଆମ୍ଭେ ମୁନିକନ୍ୟା ଅଟୁଁ, ପୁଣି ମୁନିକନ୍ୟା (ଶକୁନ୍ତଳା) ଦାର ବା ଭାର୍ଯ୍ୟା ହେଉ । ଏହିପରି ଉଭୟ ଅର୍ଥ ପ୍ରକାଶିତ ହେଉଥିବାରୁ ଏଠାରେ ଶ୍ଳେଷାଳଙ୍କାର । ସେହିପରି ପାଣିଗ୍ରହଣ ଅର୍ଥ ହସ୍ତଧାରଣ ଓ ବିବାହ କାର୍ଯ୍ୟ ।

(୦) ଶ୍ରୀ ବୃଷଭାନୁ-ଆତ୍ମଜା    ବିଧିପୂର୍ବେ କରି ପୂଜା
ପ୍ରେମମର୍ମି ତୁମେ କଲେ ବିନତି ସ୍ତୁତି;
ଜୟ ପ୍ରଭୁ ରାମଚନ୍ଦ୍ର    ସଲକ୍ଷଣ ଗୁଣେ ସାନ୍ଦ୍ର
ସକଳ ମଣ୍ଡନ ସଦା ଅନନ୍ତଗତି ।
ତମତାପହା ଶୁଚିକର,
ବାଳୀ ନାମରେ ମାତକ ଭ୍ରମ ନ କର । (ବା:ଚ:)

ଏହି ପଦଟିରେ ଶ୍ଳେଷାଳଙ୍କାର ସାହାଯ୍ୟରେ ରାମଚନ୍ଦ୍ର ଓ ଚନ୍ଦ୍ର ଦୁହିଁଙ୍କର ସ୍ତୁତି କରାଯାଇ ଅଛି । ଶ୍ଳିଷ୍ଟପଦଗୁଡ଼ିକର ଅର୍ଥ ନିମ୍ନରେ ଦିଆଗଲା ।

(କ) ରାମଚନ୍ଦ୍ର—ଦଶରଥ ପୁତ୍ର, ରମଣୀୟ ଚନ୍ଦ୍ର
(ଖ) ସଲକ୍ଷଣ—ଲକ୍ଷ୍ମଣଙ୍କ ସହିତ, କଳଙ୍କଯୁକ୍ତ
(ଗ) ସକଳ ମଣ୍ଡନ—ସମସ୍ତଙ୍କର ଭୂଷଣ, କଳାମାନଙ୍କଦ୍ୱାରା ମଣ୍ଡିତ
(ଘ) ଅନନ୍ତଗତି—ସର୍ବତ୍ର ଗତିକାରୀ, ଆକାଶ ବିହାରୀ
(ଙ) ତମତାପହା—ଅଜ୍ଞାନଜନିତ ଦୁଃଖର ବିନାଶକ, ଅନ୍ଧକାରର ତାପନାଶକାରୀ
(ଚ) ଶୁଚିକର—ପବିତ୍ରକାରକ, ଶୁକ୍ଳ କିରଣଧାରୀ
(ଛ) ବାଳୀ—ମର୍କଟରାଜ, ସ୍ତ୍ରୀ

## ଉପମା (Simile) *

କବିସମ୍ମତ ସାଦୃଶ୍ୟେ ଉପମା ହୁଅଇ
ଅସମ୍ମତ କୁମୁଦାଦି ଉପମାନ ନୋହି ।
ଉପମେୟ ଉପମାନ ତୁଲ୍ୟଧର୍ମ ସଙ୍ଗେ,
ଉପମା ହୁଅଇ ପୂର୍ଣ୍ଣ ବାଚକର ଯୋଗେ ।
ଉପମେୟ ମୁଖ, ତହିଁ ଚନ୍ଦ୍ର ଉପମାନ,
ତୁଲ୍ୟଧର୍ମ ଏଥିମଧ୍ୟେ ଆହ୍ଲାଦକ ଗୁଣ ।
ଯଥା ଆଦି ଶବ୍ଦମାନ ହୁଅଇ ବାଚକ,
ପୂର୍ଣ୍ଣା ଲୁପ୍ତା ଭେଦେ ଏହୁ ହୁଅଇ ଅନେକ । (ସୁତ୍ରକ)

ତୁଲ୍ୟଧର୍ମବିଶିଷ୍ଟ ବିଭିନ୍ନ ଜାତୀୟ ଦୁଇଟି ବସ୍ତୁର କୌଣସି ବିଷୟରେ ସାଦୃଶ୍ୟ କଳ୍ପନାର ନାମ ଉପମା ।

ଯାହା ସହିତ ତୁଳନା କରାଯାଏ ତାହାକୁ ଉପମାନ ଓ ଯାହାକୁ ତୁଳନା କରାଯାଏ, ତାହାକୁ ଉପମେୟ ବୋଲାଯାଏ । ଯେଉଁ ସମାନ ଗୁଣ ଥିବାରୁ ଉପମାନ ଓ ଉପମେୟର ତୁଳନା ହୁଏ, ତାହା ସାଧାରଣ ଧର୍ମ । ଏହି ଧର୍ମ ଗୁଣ ବା କ୍ରିୟାର ଐକ୍ୟ ରୂପରେ ପ୍ରକାଶ ପାଇଥାଏ ।

---

* ସାମ୍ୟ ବାଚ୍ୟମବୈଧର୍ମ୍ୟଂ ବାକ୍ୟୈକେ ଉପମା ଦ୍ୱୟୋଃ
ସା ପୂର୍ଣ୍ଣା ଯଦି ସାମାନ୍ୟଧର୍ମ ଔପମ୍ୟବାଚି ଚ ।
ଉପମେୟଞ୍ଚୋପମାନଂ ଭବେଦ୍ ବାଚ୍ୟମ୍ ।
ଲୁପ୍ତାସାମାନ୍ୟଧର୍ମାଦେରେକସ୍ୟ ଯଦି ବା ଦ୍ୱୟୋଃ
ତ୍ରୟାଣାଂ ବାନୁପାଦାନେ ଶ୍ରୌତ୍ୟାର୍ଥୀ ସାପି ପୂର୍ବବତ୍ । [ସାଃ ଦଃ]

ଉପମାନ, ଉପମେୟ, ସାଧାରଣ ଧର୍ମ ଓ ଉପମା-ବାଚକ ଶବ୍ଦ ( ପ୍ରାୟ, ପରି, ଯଥା, ତଥା, ଯେହ୍ନେ, ତେହ୍ନେ ପ୍ରଭୃତି) ର ଉଲ୍ଲେଖ ଥିଲେ ପୂର୍ଣ୍ଣୋପମା ହୁଏ । ଏମାନଙ୍କ ମଧ୍ୟରୁ ଗୋଟିଏ କମ୍ବା ଗୋଟି-କରୁ ଅଧିକ ଲୁପ୍ତ ଥିଲେ ଲୁପ୍ତୋପମା ହୁଏ ।

ପୂର୍ଣ୍ଣୋପମାର ଉଦାହରଣ :—

(୧) ତୃଣାବର୍ତ୍ତ ବକ୍ଷେ ବିରାଜିଲେ ଶ୍ୟାମ ହରି,
ପର୍ବତ ଶୃଙ୍ଗରେ ଏକ ଜମ୍ବୁଫଳ ପରି । (ସୁଭଦ୍ର)
ଉପମେୟ—ତୃଣାବର୍ତ୍ତ ବକ୍ଷରେ ଶ୍ୟାମ ହରି
ଉପମାନ—ପର୍ବତ ଶୃଙ୍ଗରେ ଜମ୍ବୁଫଳ
ସାଧାରଣ ଧର୍ମ—ବିରାଜିବା; ବାଚକ—ପରି

(୨) ସହନ୍ତି ଧାରପାତ ଶଇଳଗଣ
ଖଳବଚନ ଯଥା ସହେ ସୁଜନ । (ଭୂ: ସ୍ତୁ:)
ଉପମେୟ—ଶୈଳ, ଉପମାନ—ସୁଜନ
ସାଧାରଣ ଧର୍ମ—ସହିବା; ବାଚକ—ଯଥା

(୩) ଅପସରି ନନ୍ଦତ ଏ ସୁନ୍ଦରୀ-ବୃନ୍ଦେ
କଂଟକ-ହାଟକ-ଗୋରୀ,
ଶୋଭି ସ୍ୱର୍ଗପୁର- ନ୍ଦରୀ ପ୍ରାୟ ରାଜେ
ଉତ୍କଳ-ରାଜ-କିଶୋରୀ । (ଯଯାତି)
ଉପମେୟ—ଉତ୍କଳ-ରାଜ-କିଶୋରୀ
ଉପମାନ—ସ୍ୱର୍ଗ ପୁରନ୍ଦରୀ
ସାଧାରଣ ଧର୍ମ—ରାଜିବା
ବାଚକ—ପ୍ରାୟ

(୪) ଦେବୀଙ୍କ ସମ୍ମୁଖରେ ମଧ୍ୟେ ରାଜବାଳା
ବେନି ସଖୀ ବେନିପାଶେ
ତିନିମୂର୍ତ୍ତି ଏକ ରେଖାରେ ଦିଶଇ
ଇନ୍ଦ୍ରଧନୁ ଯଥା ଆକାଶେ । (ଯଯାତି)

**ଲୁପ୍ତୋପମା :—**

ଧର୍ମ ବାଚକାଦି ଲୋପେ ହୁଏ ଲୁପ୍ତୋପମା,
ଚନ୍ଦ୍ର ସୁନ୍ଦର ଇତ୍ୟାଦି ଜାଣ ତାର ସୀମା । (ସୂତ୍ର)

ଉଦାହରଣ :—

(୧) ଦ୍ୱିତୀୟାର ଶଶି-ରେଖା ପରି ଦିଶି
ଗଲେଣି ସେ ଇନ୍ଦ୍ରମାଳ-ହାସ୍ତି । (ଚମ୍ପୂ)
ଏଠାରେ ସାଧାରଣ ଧର୍ମ (କ୍ଷୀଣତା) ଲୁପ୍ତ ।

(୨) ବାର୍ତ୍ତା ମୋର ନେଇ ତା ବାର୍ତ୍ତା ଆଣିଲେ
ଦେବି ଦେଲବନ ପ୍ରସ୍ତାର,
ବଢ଼ାଇ ତୋ ରଖି ଘନକେଶୀ ବୋଲ
କହଇ ଡାକନ୍ତ, ସତ୍ୟ ମୋର । (ବୈ:ବି:)

'ଘନକେଶୀ' ଏଠାରେ ସାଧାରଣ ଧର୍ମ 'ମାଳମା' ଓ ବାଚକଶବ୍ଦ 'ପରି' ଲୁପ୍ତ ।

(୩) ଚମ୍ପାଧରୀଙ୍କର ଚମ୍ପକ-ଅଙ୍ଗୁଳି
କମ୍ପନେ ମଧୁ ଝଙ୍କାର,
ଉପୁଜବା ଆଶେ କେନ୍ଦୁ ଝରେ ଗଢ଼ା
ହେଉଅଛୁ ଲୌହତାର । ( ପାନ୍ଥଶାଳା )

'ଚମ୍ପକ-ଅଙ୍ଗୁଳି' ଏଠାରେ ଉପମାବାଚକ ଶବ୍ଦ 'ପରି' ଓ ଦୁହିଙ୍କର ସାଧାରଣ ଧର୍ମ 'ରମଣୀୟତ୍ୱ' ଲୁପ୍ତ ।

(୪) ଯେବେ ନବଘନ ଶ୍ୟାମ ବଂଶୀ ସ୍ୱନ
ବଂଶୀଥରେ ଥରେ ଶୁଣାଯିବ । (କ: ସୂ:)

ନବଘନଶ୍ୟାମ—ନୂତନ ମେଘ ପରି ଶ୍ୟାମଳ ବର୍ଣ୍ଣଧାରୀ ( ଶ୍ରୀକୃଷ୍ଣ ) ।

ଏଠାରେ ସାଧାରଣ ଧର୍ମ, ବାଚକ ଶବ୍ଦ ଓ ଉପମେୟ ଲୁପ୍ତ ।

ଏକ ଜାତୀୟ ବସ୍ତୁ ମଧ୍ୟରେ ଉପମା ରହି ନ ପାରେ । 'ହାତୀ ହାତୀ ପରି' । ଏଠାରେ ଉପମା ଅଳଙ୍କାର ନାହିଁ; କାରଣ ଉପମାନ ଓ ଉପମେୟ ଭିନ୍ନ ନୁହନ୍ତି ।

ଯେ ପ୍ରକାର ବର୍ଣ୍ଣନା ଦ୍ୱାରା ଉପମେୟର ଅପକର୍ଷ ହୁଏ, ସେ ପ୍ରକାର ଉପମାଳଙ୍କାର ପରିହାର କରିବା ଉଚିତ ।

'ରାଜା ଚଣ୍ଡାଳ ପରି ସାହସୀ' ଏପରି ବ୍ୟବହାର ଦୂଷଣୀୟ ।

## ମାଲୋପମା—

ଗୋଟିଏ ଉପମେୟର ଏକାଧିକ ଉପମାନ ଥିଲେ ମାଲୋପମା ହୁଏ ।

ଉଦାହରଣ :—

( ୧ ) କାନ୍ତ ବିହୁନେ ଯେସନେ ରମଣୀ,
ଧର୍ମ ବିହୁନେ ଯେସନେ ଧରଣୀ,
ବେଦ ବିହୁନେ ଯେହ୍ନେ ଦ୍ୱିଜବର,
ଧନ ବିହୁନେ ଯେହ୍ନେ ହିଣେ ନର;
ପୁତ୍ରବିନେ ନାରୀ,
ରାଜ୍ୟ ବିହୁନେ ଯେହ୍ନେ ଦଣ୍ଡଧାରୀ ।

ବିଦ୍ୟା ପାସୋରିଲେ ଯେହ୍ନେ ପଣ୍ଡିତ,
ମାତା ବିହୁନେ ଯେସନେ ବାଳୁତ,
ଚକ୍ଷୁ ବିହୁନେ ଶୋଭାବନ୍ତ ଜନ,
ଭୂଷଣେ ବିନୁ ଯେହ୍ନେ ନାରୀମାନ,
ଦିଶେ ଅସୁନ୍ଦର,
ବୃକ୍ଷ ବିହୁନେ ଯେହ୍ନେ ଗିରିବର,
କୃଷ୍ଣ ବିହୁନେ ସେହିମନ୍ତ ଗୋପୀ,
ଚିନ୍ତା-ରତ୍ନାକରେ ବୁଡ଼ାଇଲେ ଛାପି । (ମ:ମ:)

ଏଠାରେ ଉପମେୟ—କୃଷ୍ଣ ବିହୀନା ଗୋପୀ
ଉପମାନ—(୧) କାନ୍ତହୀନା ରମଣୀ
(୨) ଧର୍ମହୀନା ଧରଣୀ
(୩) ବେଦହୀନ ଦ୍ୱିଜ
(୪) ଧନହୀନ ନର
(୫) ପୁତ୍ରହୀନା ନାରୀ
(୬) ରାଜ୍ୟହୀନ ରାଜା
(୭) ବିଦ୍ୟା ପାସୋରିବା ପଣ୍ଡିତ
(୮) ମାତାହୀନ ବାଳୁତ
(୯) ଚକ୍ଷୁହୀନ ସୁନ୍ଦର ପୁରୁଷ
(୧୦) ଭୂଷଣହୀନା ନାରୀ
(୧୧) ବୃକ୍ଷହୀନ ପର୍ବତ

(୨) ଜାହ୍ନବୀ-ଯମୁନା-ଯୋଗ ଦେଖ ଗୋ ସୁନ୍ଦରି ।
ଶୁଭ୍ର ନୀଳ ଜଳ ଦିଶେ ରୁଚିର କପରି ?
ଇନ୍ଦ୍ରନୀଳ ପରେ ମୋତି ପୁଣି ଇନ୍ଦ୍ରନୀଳ,
ଗୁନ୍ଥା ହେଲା ମାଳା ପ୍ରାୟେ ଦିଶଇ ସକଳ ।

କମ୍ବା ଇନ୍ଦୀବରେ ମିଶି ଶ୍ୱେତ ଶତଦଳ—
ମାଳାପରି ଦିଶେ ଏଣୁ କଳା ଧଳା ଜଳ;
କି ଅବା ମାନସ-ଗାମୀ ରାଜହଂସ ପନ୍ତି,
କାଦମ୍ବ-ଦଳ ସଂଯୋଗେ ଯେମନ୍ତ ଦିଶନ୍ତି;
ଅଥବା ଅବନୀବର-ବଦନେ ରଚିତ,
ଚନ୍ଦନ ରଚନା କୃଷ୍ଣ ଅଗୁରୁ ମିଶ୍ରିତ;
କି ଅବା ଯେମନ୍ତେ ପ୍ରିପ୍ତେ, ସୁନୀଳ ଗଗନ,
ଶୁଭ୍ର ଶରଦଭ୍ର ରନ୍ଧ୍ରେ ଦିଶଇ ଶୋଭନ,
ଅବା ଧଳା ଭସ୍ମବୋଳା ଶଙ୍କର ଶରୀର,
ଅସିତ ଉରଗେ ଯଥା ରାଜଇ ରୁଚିର;'
କି ଅବା ଛାୟାରେ ମିଶା/ଚନ୍ଦ୍ର ଜ୍ୟୋତ୍ସ୍ନାପରି,
ଦିଶଇ ପ୍ରେୟସି, ଗଙ୍ଗା ଯମୁନା ଲହରୀ । ( ଅଂଧ୍ରଃ )

ଏଠାରେ ଉପମେୟ—ଜାହ୍ନବୀ ଯମୁନା ଯୋଗ ।

ଉପମାନ—(୧) ଇନ୍ଦ୍ରନୀଳ ପରେ ମୋତି ଓ ମୋତି ପରେ ପୁଣି ଇନ୍ଦ୍ରନୀଳ ଗୁନ୍ଥା ହୋଇଥିବା ମାଳା ।

(୨) ଇନ୍ଦୀବର ସମନ୍ୱିତ ଶ୍ୱେତ ଶତଦଳ ମିଶିଥିବା ମାଳା ।
(୩) ରାଜହଂସ ପନ୍ତି ସହିତ ସଂଯୁକ୍ତ କାଦମ୍ବଦଳ ।
(୪) ପୃଥିବୀ ଉପରେ କୃଷ୍ଣ ଅଗୁରୁ ମିଶ୍ରିତ ଚନ୍ଦନ ରଚନା ।
(୫) ଶୁଭ୍ର ଶରଦଭ୍ର ରନ୍ଧ୍ରରେ ପରିଦୃଷ୍ଟ ନୀଳ ଗଗନ ।
(୬) ଅସିତ (କୃଷ୍ଣ) ଉରଗ ଶୋଭିତ ଧଳାଭସ୍ମ ବୋଳା ଶଙ୍କର ଶରୀର ।
(୭) ଛାୟା ମିଶ୍ରିତ ଚନ୍ଦ୍ରଜ୍ୟୋତ୍ସ୍ନା ।

(୩) ମିଶିଯାଏ ଯଥା ପ୍ରଭାତ ତାରା ରବି କିରଣେ,
ମିଶିଯାଏ ଯଥା ଜୀବାତ୍ମା ପରମାତ୍ମାଚରଣେ,
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।(ଚ:ଭା:)

ନୀଳ ତରଙ୍ଗରେ ଅବଳା ଚନ୍ଦ୍ରଭାଗାର ମିଶିଯିବା—ଉପମେୟ ।
ଏହାର ଉପମାନ ହେଉଛନ୍ତି—

(୧) ରବି କିରଣରେ ପ୍ରଭାତ ତାରା ମିଶିଯିବା,
(୨) ଜୀବାତ୍ମା-ପରମାତ୍ମା ଚରଣରେ ମିଶିଯିବା,
(୩) ଚପଳା ନୀଳ ଜଳଦ ସଙ୍ଗେ ମିଶିଯିବା ।

## ରୂପକ *
## (Metaphor)

ଉପମାନ ଓ ଉପମେୟର ଅଭେଦ କଳ୍ପନା କରାଗଲେ ରୂପକ ଅଳଙ୍କାର ହୁଏ । ଏଥିରେ 'ରୂପ' ବା 'ସ୍ୱରୂପ' ଶବ୍ଦ ବ୍ୟବହୃତ ହୋଇଥାଏ । ସ୍ଥଳ ବିଶେଷରେ ଏହି ଶବ୍ଦ ଲୁପ୍ତ ଥାଏ । ରୂପକାଳଙ୍କାର ୩ ବିଧ; ଯଥା:—ପରମ୍ପରିତ, ସାଙ୍ଗ ଓ ନିରଙ୍ଗ ।

**ପରମ୍ପରିତ ରୂପକ—**

ଯେଉଁଠାରେ ଗୋଟିକର ଆରୋପ ଅନ୍ୟର ଆରୋପ ପ୍ରତି କାରଣ ହୋଇଥାଏ, ସେଠାରେ ପରମ୍ପରିତ ରୂପକ ହୁଏ ।
ଉଦାହରଣ:—

(୧) ଖେଦ-ବୀଜ ନିଜ ହୃଦ-କେଦାରେ ବିଞ୍ଚିଲୁରେ । (ଚମ୍ପୂ)

ଏଠାରେ ଖେଦରେ ବୀଜତ୍ୱ ଆରୋପଣ କରାଯାଇଥିବାରୁ ହୃଦୟରେ କେଦାରତ୍ୱର ଆରୋପଣ ହୋଇଅଛି ।

---

* ରୂପକଂ ରୂପିତାରୋପା ବିଷୟେ ନିରପହ୍ନବେ । [ସା:ଦ:]

(୨) ଧନମୁଖ-ଚନ୍ଦ୍ରମାକ ମୋ ନେତ୍ର-ଚକୋର । (ବୈ: ଚି:)

ଏଠାରେ ମୁଖରେ ଚନ୍ଦ୍ରମାର ଆରୋପ ଓ ନେତ୍ରରେ ଚକୋରର ଆରୋପ ପରସ୍ପର ପ୍ରତି କାରଣ ହୋଇଅଛନ୍ତି ।

(୩) ଆଶା-ପାରିଜାତ ଫୁଟିବ ହୃଦ-ନନ୍ଦନ-ବନେ (କୁସୁମାଞ୍ଜଳି)

ଆଶାଠାରେ ପାରିଜାତର ଆରୋପଣ ହେତୁ ହୃଦୟରେ ନନ୍ଦନବନର ଆରୋପଣ ହୋଇଛି ।

(୪) କି କହିବି କିସ କରିବି କହୁଁଛି
ଭାବି ନ ପାରିଲି ମନେ
ବିସ୍ମୃତି-ଜୀମୂତ ବ୍ୟାପିଗଲା ତାର
ସହସା ହୃଦ-ଗଗନେ । (ପ୍ର:ବ:)

ଏଠାରେ 'ବିସ୍ମୃତି'ରେ 'ଜୀମୂତ'ର ଆରୋପ, 'ହୃଦ'ରେ 'ଗଗନ'ର ଆରୋପର ହେତୁ ଅଟେ ।

ସ୍ଥଳବିଶେଷରେ ଦୁଇରୁ ଅଧିକ ରୂପକ ପରସ୍ପର ନିର୍ଭର କରିଥାନ୍ତି । ଏପରି ସ୍ଥଳରେ ପରମ୍ପରିତ ରୂପକ ମାଳାବଦ୍ଧ ହୋଇଥାଏ । ଯଥା:—

ବଧୂ-ମୁଖ-ବିଧୁ ହାସ-ପୀୟୂଷ
ଲଭିଁ ଚକ୍ଷୁ-ଚକୋର ହେଲା ତୋଷ ।
ହୃଦ-କୁମୁଦ ପ୍ରମୋଦ ବଢ଼ିଲା,
ଲଜ-ଅନ୍ଧାରେ ବିପତ୍ତି ପଡ଼ିଲା । (ପ୍ରେ:ସୁ:ନି:)

ମୁଖଠାରେ ବିଧୁର, ହାସଠାରେ ପୀୟୂଷର, ଚକ୍ଷୁଠାରେ ଚକୋରର, ହୃଦଠାରେ କୁମୁଦର ଓ ଲଜଠାରେ ଅନ୍ଧକାରର ଆରୋପଣ ପରସ୍ପର ସାପେକ୍ଷ । ତେଣୁ ଏଠାରେ ମାଳାବଦ୍ଧ ପରମ୍ପରିତ ରୂପକ ।

## ସାଙ୍ଗ ରୂପକ—

ଉପମେୟର ବିଭିନ୍ନ ଅଙ୍ଗରେ ଉପମାନର ବିଭିନ୍ନ ଅଙ୍ଗର ଅଭେଦ ଆରୋପଣ କରାଗଲେ, ସାଙ୍ଗ ରୂପକ ହୁଏ । ଯଥା:—

(୧) ଶୋକର ଝଟିକା ବହେ ରାଜାଙ୍କ ନଗରେ,
ବାତ ଦୀର୍ଘଶ୍ୱାସ ସହିଁ, ଲୋତକ ବରଷା,
ରାଜରାଣୀଙ୍କର ଘନ ମୁକ୍ତ କେଶରାଜି
କାଦମ୍ବିନୀ, ସ୍ଫୁରୁ ଅଙ୍ଗ-ଯଷ୍ଟି ସୌଦାମିନୀ । (ଦା:ବା:)

ଏଠାରେ ଶୋକଠାରେ ଝଟିକାର ଆରୋପଣ କରାଯାଇଅଛି । ଶୋକର ବିଭିନ୍ନ ଅଙ୍ଗ ଦୀର୍ଘଶ୍ୱାସ, ଲୋତକ, ଉନ୍ମୁକ୍ତ କେଶ ଓ ଶରୀରରେ ଯଥାକ୍ରମେ ବାତ, ବର୍ଷା, କାଦମ୍ବିନୀ ଓ ସୌଦାମିନୀର ଆରୋପଣ କରାଯାଇଅଛି ।

(୨) ଯଜ୍ଞଦେ ଅଧ୍ୟାତ୍ମବାଦୀ ଅଚିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ, ହୃଦ ବେଦି ଯହିଁ,
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀସ୍ୱରୂପିଣୀ,
ତପ ବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞପଶୁ,
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍‌ଗାତା,
ସୋମ ରସ ସୁମଧୁର ଭକ୍ତି ଅଧୋକ୍ଷଜେ । (ମ:ଯା:)

ଏଠାରେ ଯଜ୍ଞଦଙ୍କର ହୃଦୟ, ଆତ୍ମା, ଶ୍ରଦ୍ଧା, ତପ, କାମ, କ୍ରୋଧ, ଧୈର୍ଯ୍ୟ, ତ୍ୟାଗ, ବଚନ, ଭକ୍ତି ପ୍ରଭୃତିରେ ଯାଗର ବିଭିନ୍ନ ଅଙ୍ଗ ଅର୍ଥାତ୍ ବେଦି, ଯଜମାନ, ପତ୍ନୀ, ବହ୍ନି, ଆଜ୍ୟ, ଯଜ୍ଞପଶୁ, ଯୂପ, ହୋତା, ଉଦ୍‌ଗାତା, ସୋମରସ ପ୍ରଭୃତିର ଯଥାକ୍ରମେ ଆରୋପଣ କରାଯାଇଅଛି । ଏଣୁ ଏହା ସାଙ୍ଗରୂପକ ।

(୩) ନଦୀନାଗ କଲେ ବେଗ ଗମନ,
ଲହରୀ ରସନା ସୂକାର ସ୍ୱନ,
ଫେନ-କଞ୍ଚୁକ ଭ୍ରମ-ଚକ୍ରେ ଶୋଭା,
ସାଗର ବଳେ ପଶିବାକୁ ଯାଇ । (ଲା: ବ:)

ନଦୀଠାରେ ନାଗର ଆରୋପଣ ସଙ୍ଗେ ନଦୀର ବିଭିନ୍ନ ଅଙ୍ଗ, ଲହରୀ, ସ୍ୱନ, ଫେନ, ଭ୍ରମ ଓ ସାଗରଠାରେ ଯଥାକ୍ରମ ରସନା, ସୂକାର, କଞ୍ଚୁକ, ଚକ୍ର ଓ ବଳର ଆରୋପଣ କରା ହୋଇଥିବାରୁ ଏଠାରେ ସାଙ୍ଗ ରୂପକ ।

(୪) କବିତା ବନିତା କବି ତା ପିତା,
କହିବା ଲୋକ ତାର ଉପମାତା,
କଲେ ତାକୁ ଭୋଗ ରସିକ ନେତା,
କେତେ ହେଁ ଅବା ରହଇ ଯୋଗ୍ୟତା,
କୁମନ୍ତ ଗୁଁଆର,
କେବଳ ବଇମାତ୍ର ଭାଇ ତାର । (ର:କ:)

ଏଥିରେ କବିତାଠାରେ ବନିତାର, କବିଠାରେ ପିତାର, କହିବା ଲୋକଠାରେ ଉପମାତାର, ରସିକଠାରେ ନେତାର ଓ ଗୁଁଆରଠାରେ ବୈମାତ୍ରେୟ ଭାଇର ଆରୋପଣ ହୋଇଥିବାରୁ ସାଙ୍ଗ ରୂପକ ।

(୫) ଖଡ୍‌ଗ ତଲବାର ଚପଳା ଝଲକେ ସ୍ତନିତ ଗଜଗର୍ଜନ
ପତାକା ଉଡ୍‌ଡୀନ ବକପନ୍ତି ସେନା ଗର୍ଜନ ଡାହୁକ ସ୍ୱନ,
କେତକୀ ଶାଣିତ କରବାଳପୁଞ୍ଜୀ ଧନୁ ଇନ୍ଦ୍ର ଶରାସନ
ଘେନ ଆଜ ଭାନୁ-ଗ୍ରାସ ଲାଳସାରେ ଧାଇଁଛନ୍ତି ସୈନ୍ୟଗଣ ।

## ନିରଙ୍ଗ ରୂପକ—

ଅଙ୍ଗ ପରିତ୍ୟାଗ କରି କେବଳ ଉପମେୟଠାରେ ଉପମାନର ଅଭେଦ ଆରୋପଣ କରାଗଲେ ନିରଙ୍ଗ ରୂପକ ହୁଏ; ଯଥା—

(୧) ଯହିଁ ମନ ଯାଏ ବଶଇ ସୁନ୍ଦରୀ—
ମୂରତି ସ୍ମୃତି-ଦର୍ପଣେ । (ପ୍ର:ବ:)

ସ୍ମୃତି ସହିତ ଦର୍ପଣର ଅଭେଦ କଳ୍ପନା କରାଯାଇଥିବାରୁ ଏଠାରେ ନିରଙ୍ଗ ରୂପକ ।

(୨) ବଦନ-ପାଧିତ ଥରେ ରହିଁ ତାଙ୍କ
ମୁଖକଲା ଅବନତ । (ପ୍ର: ବ:)

ଏଠାରେ ବଦନ ସହିତ ପାଧିତର ଅଭେଦ କଳ୍ପନା କରାଯାଇଅଛି ।

(୩) ଭବତଳେ ବନ୍ଦ୍ରୋଦୟା ମୂର୍ତ୍ତି ମଣ୍ଡି
ଧଉଳ ଦର୍ପଣ ଦୟା ସ୍ରୋତସ୍ୱିନୀ ।

ସ୍ଥଳ ବିଶେଷରେ ନିରଙ୍ଗ ରୂପକ ମାଳାବଦ୍ଧ ହୋଇଥାଏ; ଯଥା:—

(୧) ଧୀର-ଚିତ୍ତ-ହ୍ରଦ-ପଦ୍ମ-ମିହିର
ରସିକ ରସ ରତନ ଭଣ୍ଡାର
ଗ୍ରାହକ ପ୍ରେମ ବାଣିଜ୍ୟ ପସରା
କାମୀ କାମଦା ଚିନ୍ତାମଣି ପରା
ଏ ସୁନ୍ଦ ଗାରିମା,
ପ୍ରୀତି ଆନନ୍ଦ ସିନ୍ଧୁକୁ ଚନ୍ଦ୍ରମା ( ବି:ଚି: )

## ଉପମା ଓ ରୂପକର ପ୍ରଭେଦ

ଉପମାରେ ସମାନ ଗୁଣ ବା ଧର୍ମବଶତଃ ଉପମାନ ଓ ଉପମେୟର ତୁଳନା କରାଯାଇଥାଏ; ମାତ୍ର ରୂପକରେ ଉପମାନ ଓ ଉପମେୟକୁ ଅଭିନ୍ନ ବୋଲି କଳ୍ପନା କରାଯାଇଥାଏ ।

## ଅର୍ଥାନ୍ତରନ୍ୟାସ *

ଉକ୍ତ ସାମାନ୍ୟ ବିଶେଷେ ଅର୍ଥାନ୍ତରନ୍ୟାସ
ମାରୁତି ଚଳିଲେ ଅବଧି, ଦୃଢ଼େ କି ଆୟାସ । (ସୁତଳ

କାର୍ଯ୍ୟଦ୍ୱାରା କାରଣର ବା କାରଣଦ୍ୱାରା କାର୍ଯ୍ୟର, ସାମାନ୍ୟଦ୍ୱାରା ବିଶେଷର ବା ବିଶେଷଦ୍ୱାରା ସାମାନ୍ୟର ସମର୍ଥନ କରାଗଲେ ଅର୍ଥାନ୍ତରନ୍ୟାସ ଅଳଙ୍କାର ହୁଏ; ଯଥା:—

(୧) ମାନବ ବିହଙ୍ଗମୀଙ୍କୁ କାହିଁ ସନ୍ଦେଶ,
ଯକ୍ଷ ନ ବିଚାରିଲା ଏଥି ବିଶେଷ,
ଉତ୍କଣ୍ଠାକୁଳ ହୋଇ ଘନକୁ ଭାଷେ,
ସଜୀବ ମଣି ହୃଦ କଥା ପ୍ରକାଶେ ।
ଅଙ୍ଗ ଧାରଇ ଯାର ଅନଙ୍ଗବାଣ,
ଚେତନ ଅଚେତନ ତାର ସମାନ । (ମେ:ଦୂ:)

---

* ସାମାନ୍ୟଂ ବା ବିଶେଷେଣ ବିଶେଷସ୍ତେନ ବା ଯଦି
କାର୍ଯ୍ୟଞ୍ଚ କାରଣେନେଦଂ କାର୍ଯ୍ୟେଣ ଚ ସମର୍ଥ୍ୟତେ
ସାଧର୍ମ୍ୟେଣେତରେଣାର୍ଥାନ୍ତରନ୍ୟାସୋଽଷ୍ଟଧା ତତଃ । [ସା:ଦ:]

(୨) ଧନ୍ୟ ସେ ପ୍ରୀତିକି　　　　　　ମରଣ ଘାତକି
　　　　ପ୍ରୀତି ସେ ପାରଇ ଜିଣି,
ଶିରୀଷ-ମୃଦୁଳା　　　　　　ଲବଣୀ ପିଚ୍ଛଳା
　　　　ପ୍ରୀତି କଲା ସାହସିନୀ । (କୋ:ଗୀ:)

(୩) ଯେତେ ଦୂରେ ଥିଲେ ପାଶେ ଅଛୁ ଥିବୁ ଯେବ,
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
　　　　ପ୍ରୀତି ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।
(ପ୍ରେ:ସୁ:ନ:)

(୪) କଳଙ୍କ ହିଁ ଥାଇ　　　　　　କଳାକର କୋଳେ
　　　　କରଇ ନେତ୍ର ରଞ୍ଜନ,
ସ୍ୱଭାବ ସୁନ୍ଦର　　　　　　ଅଙ୍ଗକୁ ଜଗତେ
　　　　ନ ହୁଏ କିସ ମଣ୍ଡନ । (ପ୍ର:ବ:)

(୫) ସେକାଳେ ଦାବାନଳ ଗିରିକାନନେ,
　　　　ଜଳୁଥିବ ଦେଖ ଯେବେ ବାରି ବର୍ଷଣେ
ଲିଭାଇବ ଅନଳ ସଂଶୟ ନାହିଁ,
　　　　ମହତ ଲୋକର ଏ ସୁରୀତି ଭାଇ । (ମେ:ଦୂ:)

## ବ୍ୟତିରେକ

ଉପମେୟ ଯେବେ ଉପମାନରୁ ଅଧିକ
ହୁଅଇ, ତହିଁ ଅଳଙ୍କାର ବ୍ୟତିରେକ ।
ଶ୍ରୀରାମ-କୀର୍ତ୍ତି-ସୁଧାଂଶୁ ନୁହଁଇ ଯେ କ୍ଷୀଣ
କଦାପି ନ ଲଭେ ଅସ୍ତ, ଦିନେ ନୁହେ ମ୍ଳାନ । (ମୂଳ)

ଉପମାନ ଅପେକ୍ଷା ଉପମେୟର ଉତ୍କର୍ଷ ବା ଅପକର୍ଷ ବର୍ଣ୍ଣନା କରାଗଲେ ବ୍ୟତିରେକ ଅଳଙ୍କାର ହୁଏ; ଯଥା—

(୧) କେଡ଼େ ଶୋଭା ଧରେ ଗୁରୁ କର୍ଣ୍ଣ ଯୁଗେ ହାର ବଉଳ,
ଶୋଭା ଦେଖି ଯିବ ଶତ ମନୋଭବ ଶୋଭା ମଉଳ ।
(ଉଷା)

(୨) ବାଦେ ଜଣେ କଳ୍ପଦ୍ରୁମ ସର୍ବ୍ବ ବୃକ୍ଷପନ୍ତ୍ର,
ବଦୃଶ୍ୟ ଫଳ ସେ ଦୃଶ୍ୟ ଫଳେ ଏ ରାଜନ୍ତ୍ର । (ବୈ: ବି:)

(୩) ପ୍ରବାଳବୃନ୍ତରେ ଖଚିତ ସ୍ୱଚ୍ଛ ସ୍ଫଟିକଦଳ,
ତୁଳନା ଲଭନ୍ତା ହୋଇଲେ ସୁବାସିତ କୋମଳ ।
(କଥାବଳୀ)

(୪) କୋଟି କୋଟି କାମ ହୋଇବେ ଯେବେ
ପାଦ ତଳକୁ ସମାନ ନୋହିବେ । (ଚ:ମ:)

(୫) ଆନନ୍ଦ ପ୍ରତିମା ପ୍ରାପ୍ତେ ମନୋହର
ମୂରତି ଯୁବତୀ ତନ,
ରୂପ-ରଣେ ଦଳ ଦେବେ ଯେତୁ ଗୁରୁ-
ଚରଣେ ସୁର-କାମିନୀ । (ପ୍ର:ବ:)

(୬) ହସୁଥିଲା ଶିଶୁ- ହରିଣାକ୍ଷୀ ରତ୍ନ-
ଭୂଷଣେ କବା ମଞ୍ଜୁଳ
ତୁଳା ତାର ଯିନା ହୁଅନ୍ତା ଚକିତ—
ଲତାରେ ଫୁଟିଲେ ଫୁଲ । (ନ:କେ:)

## ଉତ୍ପ୍ରେକ୍ଷା *

## (Hypothetical Metaphor)

ପ୍ରକୃତରେ ଅନ୍ୟରୂପେ ସମ୍ଭାବନା ଯେବେ
ହୁଅଇ ଉତ୍ପ୍ରେକ୍ଷା ନାମ ଅଳଙ୍କାର ତେବେ ।
ନିଶାମୁଖେ ଅନ୍ଧକାର ମଣୁଅଛି ମୁହିଁ
କୋକ-ବିରହ-ଅନଳ-ଧୂମସ୍ତୋମ ଏହି । (ସୁଡ଼ଳ)

ଏଠାରେ ସନ୍ଧ୍ୟାକାଳୀନ ଅନ୍ଧକାର ଚକ୍ରବାକ-ବିରହା-ନଳର ଧୂମସମୂହରୂପେ ସମ୍ଭାବନା କରି ଯାଇଅଛି ।

ଉପମେୟକୁ ଉପମାନ ରୂପେ ସମ୍ଭାବନା କରାଗଲେ ଉତ୍-ପ୍ରେକ୍ଷା ଅଳଙ୍କାର ହୁଏ । ଏଥିରେ ଯେପରି, ସତେ, କି ପ୍ରଭୃତି ଉତ୍ପ୍ରେକ୍ଷାବୋଧକ ଶବ୍ଦ ବ୍ୟବହୃତ ହୋଇଥାଏ । ଏ ପ୍ରକାର ଶବ୍ଦର ଉଲ୍ଲେଖ ଥିଲେ ବାଚ୍ୟୋତ୍ପ୍ରେକ୍ଷା ହୁଏ, ନ ଥିଲେ ପ୍ରତୀୟ-ମାନୋତ୍ପ୍ରେକ୍ଷା ହୁଏ ।

ବାଚ୍ୟୋତ୍ପ୍ରେକ୍ଷାର ଉଦାହରଣ :—

(୧) ରାମକୃଷ୍ଣ ସଙ୍ଗେ ଯେନ ସଫଳାର ସୁତ,
ବାହ୍ନିଲ ଅପୂର୍ବ କରି ଗୋପଦାଣ୍ଡେ ରଥ,
କି ଅବା ମାତଲି ସଙ୍ଗେ ବିଜେ ଶଚୀନାଥ !
ମଦନ ବିଜୟେ କି ୭ ସମ୍ବର ସମରେ !
ଚନ୍ଦ୍ର କି ଗମନ କରି ଯାଉଛି ଅମ୍ବରେ ? (ମ:ମ:)

(୨) ଇନ୍ଦ୍ରନୀଳ-କାନ୍ତି ବିଶାଳ ଶୋଲଗ୍ନି,
ଦେଖି ମୋ ମନକୁ ଆସଇ ଏପରି,
ଉର୍ଦ୍ଧ୍ୱେ ଉଠନ୍ତି କି ଭେଦଣ ଅବନୀ
ମୟୂରରଚିତ ଯାନେ ବୈରୋଚନ ! (ଚିଲିକା)

---

* ଭବେତ୍ ସମ୍ଭାବନୋତ୍ପ୍ରେକ୍ଷା ପ୍ରକୃତସ୍ୟ ପରାତ୍ମନା । [ସା:ଦ:]

ଏଠାରେ ଉପମେୟ (ଶୋଭଣା)କୁ ଉପମାନ (ମୟୂରରଚିତ ଯାନ) ରୂପେ ସମ୍ଭାବନା କରାଯାଇଅଛି ।

(୩) ଚୁମ୍ବି ଚରଣକୁ ଶକ୍ଭର ଗଜ ଦୋଳେ ଚରମେ,
ମଦନ-କେତନ ଉଡ଼ଇ କିବା ଶୋଭା ଆଶ୍ରମେ ? (ଚ: ଘ:)

(୪) ଶ୍ଵେତାଙ୍ଗ ଚଢ଼ାଇଗୁମ୍ଫା ସମୁଦ୍‌ଗତ,
ମାର ଭେଦ କିବା ଉଠେ ଝୀରବତ ? (ଶଳକା)

(୫) ଉଜ୍ଜ୍ୱଳ ଗ୍ରୀମ୍ବାପଥ ନୟନ ରମେ,
ଧରମ ଦାଣ୍ଡ କି ସେ ପାପ କର୍ଦମେ ! (ଭୁ: ସ୍ତ:)

(୬) ଦେଖିଲା ସୁନ୍ଦରୀ ସମ୍ମୁଖେ ଅପୂର୍ବ
ସୁନ୍ଦର ଯୁବକ ବର,
ଅଙ୍ଗବନ୍ତ କି ସେ ଅନଙ୍ଗ ଅଥବା
ନରରୂପୀ ସୁଧାକର ! (ପ୍ର:ବ:)

(୭) ବନ୍ଦ୍ ବନ୍ଦ୍ ଜଳ ରହିଛି ଗୁଚ୍ଛ କୁଟିଳ ବାଳେ
ତୁଷାର ବୃଷ୍ଟି କି ହୋଇଛି ନବ ତମାଳଦଳେ ? (ଲା:ବ:)

(୮) ହରଧର ରଜତର ଦେଖି ମାର ପର ପରଶଂସା ନ ସହି
କନକ ମଞ୍ଜୁଳ ଶଇଳ ଯୁଗଳ କି ସାର ଉରଦେଶେ ବହି
ବଢ଼ାଏ, କମେ କମେ ତାର ଉନ୍ନତ
ମଦନ ମୋହନ ମିଶି ବେନି ଜନ ସଦନ ତହିଁ କଲେ ସତ ।
(ବୈ:ବି:)

(୯) କଳା କଳେବର କହ୍ନାଇ ସଙ୍ଗେ ରୋହିଣୀସୁତ
କରନ୍ତି ମଥୁରା ବିଜୟ ଦାଣ୍ଡେ ଦେଖି ସଙ୍ଗାତ
ଖସି ପଡ଼ୁଛି କି ଆକାଶୁଁ କିଏ ଗଙ୍ଗାଯମୁନା !
(କଳାକଳେବର ଚ:)

ପ୍ରତୀୟମାନୋତ୍‌ପ୍ରେକ୍ଷାର ଉଦାହରଣ :—

(୧) ବାଜୀ ଛାଳିଲ୍ ବେଳେ ନେତ୍ର
ଜୀବନ ହୋଇଲା ଆରତ;
ଖେଳି ଆସୁଛି କାଳ ଅହି
ଏ ମୋତେ ଦଂଶିବାର ପାଇଁ । (ଲା:ବ:)

ଏଠାରେ ଉପମେୟ (ନେତ୍ର ଛାଳିବା)କୁ ଉପମାନ (କାଳ-ଅହି ଖେଳିବା) ରୂପେ ସମ୍ଭାବନା କରାଯାଇଛି । ମାତ୍ର ଉତ୍‌ପ୍ରେକ୍ଷା-ବୋଧକ କୌଣସି ଶବ୍ଦର ଉଲ୍ଲେଖ ନାହିଁ ।

(୨) କର୍ତ୍ତବ୍ୟେ ବିମୂଢ଼ ହୋଇ ମହାରାଜ
ରହିଲେ ବିଷମ କଷ୍ଟେ,
ବିଚାରିଲେ ମନେ ଚନ୍ଦ୍ର ସହସା
ପଶିଗଲା ନାଗ କଣ୍ଠେ । (ପ୍ର: ବ:)

କର୍ତ୍ତବ୍ୟବିମୂଢ଼ ରାଜାଙ୍କୁ ନାଗକଣ୍ଠରେ ପ୍ରବେଶ କରିଥିବା ଚନ୍ଦ୍ରରୂପେ ସମ୍ଭାବନା କରାଯାଇଅଛି । କୌଣସି ଉତ୍‌ପ୍ରେକ୍ଷା-ବୋଧକ ଶବ୍ଦ ନାହିଁ । ତେଣୁ ଏ ସ୍ଥଳରେ ପ୍ରତୀୟମାନୋତ୍‌ପ୍ରେକ୍ଷା ଅଳଙ୍କାର ।

## ସ୍ୱଭାବୋକ୍ତି *

ସ୍ୱଭାବ ବର୍ଣ୍ଣନା ହେଲେ ସ୍ୱଭାବୋକ୍ତି ହୋଇ,
ଦେଖ, ମୃଗ ଚଳନେତ୍ର ଉର୍ଦ୍ଧ୍ୱକର୍ଣ୍ଣେ ରହି । (ସୁଚଳ)

ଶିଶୁ, ପଶୁ ଓ ପକ୍ଷୀ ପ୍ରଭୃତିଙ୍କର ଆକାର ଓ କ୍ରିୟାର ଚମତ୍କାରୀ ବର୍ଣ୍ଣନାକୁ ସ୍ୱଭାବୋକ୍ତି କହନ୍ତି । ଦ୍ରବ୍ୟ, ଗୁଣ, ଜାତି ଓ କ୍ରିୟା ରୂପରେ ସ୍ୱଭାବୋକ୍ତି ହୋଇପାରେ ।

* ସ୍ୱଭାବୋକ୍ତିର୍ଦୁରୂହାର୍ଥ ସ୍ୱକ୍ରିୟାରୂପବର୍ଣ୍ଣନମ୍ । [ସା:ଦ:]

ଉଦାହରଣ :—

(୧) (ନିତ୍ୟାଗତ)—

ଉଡ଼ଇ ପତାକାଶ୍ରେଣୀ ଅମ୍ବରେ,
ମଙ୍ଗଳ ବାଜଣା ବାଜେ ସୁସ୍ୱରେ,
ଶୁଭଇ ଚୌଦିଗେ ଶୁଭ ସଙ୍ଗୀତ,
ଧୂପ ପୁଷ୍ପ ଗନ୍ଧେ ପୁରୀ ପୂରିତ,
ମହାନନ୍ଦେ ପୁରବାସୀ,
ବିବିଧ ବିଧାନେ ରତ ନରନାରୀ
ଶ୍ରୀରାମ ଶୁଭ ମନାସି । (ଶ୍ରୀରାମ ବନବାସ)

ଶ୍ରୀରାମଙ୍କ ଅଭିଷେକ ଉପଲକ୍ଷରେ ଅଯୋଧ୍ୟାର ଶୋଭା ପ୍ରାକୃତିକ ଭାବରେ ବର୍ଣ୍ଣିତ ।

(୨) ଧୂଳି ଉଡ଼ାଇଣ ଦାଣ୍ଡେ କରି ହମ୍ବାରଡ଼ି,
ଯାଉଛନ୍ତି ଗୋରୁପଲ ଗୋଠରୁ ବାହୁଡ଼ି ।
ହଳକାମ ସାରି ଚଷା ମହା ଆନନ୍ଦରେ,
ନାନା ରଙ୍ଗେ ଗୀତ ଗାଇ ବାହୁଡ଼ଇ ଘରେ । (ସନ୍ଧ୍ୟା)

ଏହା ସନ୍ଧ୍ୟାକାଳୀନ ଗ୍ରାମ୍ୟଦୃଶ୍ୟର ପ୍ରାକୃତିକ ବର୍ଣ୍ଣନା ।

(୩) ପ୍ରଭାବ ସୁନ୍ଦର ଲମ୍ଫେ କୃଷ୍ଣସାର
ଗଗନେ ଅଧିକ ଯାଇ,
ଥରେ ଥରେ ମାତ୍ର ଦେଉଥାଏ ବନ-
ଭୂମିରେ ପାଦ ଲଗାଇ ।

ପୁଚ୍ଛ ଲପଟାଇ ଗ୍ରୀବ ସଙ୍କୁଚାଇ
ଆଶୁଗ-ପତନ-ଭୟେ,
ଗ୍ରୀବା ଭଙ୍ଗି ଥରେ ଥରେ ରଥେ ଚାହିଁ
ପଳାଏ ପୁଣି ଅଥୟେ । (ପ୍ର:ବ:)

ଏଠାରେ ଦୁଷ୍ମନ୍ତଙ୍କ ରଥଦ୍ୱାରା ଅନୁଧାବିତ ମୃଗର କାର୍ଯ୍ୟାବଳୀ ଚମତ୍କାର ଭାବରେ ବର୍ଣ୍ଣିତ ।

(୪) ଦେଖ ବୃକ୍ଷ ଶିଖରେ ମୟୂରଗଣ
ଆଗ୍ରେଜ୍ଞ ବାଳାତପ ସେବନେ ମଗ୍ନ ଯେ,
ହେମ-ବିନ୍ଦୁ-ଖଚିତ କଣ୍ଠକୁ ମୋଡ଼ି
ଚଞ୍ଚୁରେ ବ୍ୟସ୍ତ ପୁଚ୍ଛ ଦ୍ୟନ୍ତ ସଜାଡ଼ି ଯେ ।
(ସଚ୍ଚିଦାନନ୍ଦ)

(୫) ଅଚକିତ ଚିତ୍ତେ ଭ୍ରମନ୍ତି କୁରଙ୍ଗେ ହୃଦୁ ଶଙ୍କା ପରିହରି
ବିବିଧ ବିଟପୀ ପତ୍ରପୁଷ୍ପଫଳେ ଅଛନ୍ତି ଶୋଭା ବିସ୍ତାରି ।
ଭ୍ରମନ୍ତି ଚୌଦିଗେ କପିଳ ଗୋଧନ ନ ଦିଶେ ଶସ୍ୟକେଦାର
ବୃକ୍ଷପତ୍ର ମଧ୍ୟୁଁ ଉଠି ଯଜ୍ଞଧୂମ ଦିଶୁଅଛି ବହୁଦୂର ।

(୬) (ଦ୍ରବ୍ୟଗତ)—

କଳାକଳେବର ଧୂଳିଧୂସର, କଟିରେ କିଙ୍କିଣି, ନାହିଁ ଅମ୍ବର
କାକର ପ୍ରାୟେ ଝାଳ ବିନ୍ଦୁ ବିନ୍ଦୁ, କଳିତ କରିଛି ଶ୍ରୀମୁଖ ଇନ୍ଦୁ ।

(୭) (ଜାତିଗତ)—

ଦାଗିବୋଲି ଯାହା କଲା ଦଇବ, ତା ଗୁଣ ବଚନେ କିସ କହିବ ?
ଘର ହେଉ ପଛେ ଉରଜ ଶ୍ରେଣୀ, ନାଗିରେ ପୁଣି ତାକୁ ନକ ଗଣି,
କାହାର ସେ ନୁହେ,
ଜୁହାର ଗେହ୍ଲାଇ ପରଣ ଦହେ । (କବିସୂର୍ଯ୍ୟ)

(୮) (ଗୁଣଗତ)—

ଜାତିରେ ହାଣ୍ଡି ହୋଇଥିଲେ ହେଲେ, କାନ୍ତିରେ ରୂପା ଗୁର ଶିନା ଥିଲେ,
ଅନ୍ତରେ ତାକୁ ତଳପକୁ ଡାକ, ଗୁନ୍ତରେ ଭିଡ଼ ଶୁଆଏ ସେ ଜାକ
କାତିଟି ଛଡ଼ାଇ,
ଘଷି ଶେଷରେ ଦିଏ ଘଉଡ଼ାଇ । (କବିସୂର୍ଯ୍ୟ)

(୯) (କ୍ରିୟାଗତ)—

କେ କେକା ରବଏ ନାଚି ନାଚି ଯାଏ କେ ବକ ରବଏ ବସନ୍ତ,
କେ ଭୃଙ୍ଗ ଝଙ୍କାର କରି ଅହଙ୍କାର କରି ହୁଙ୍କାର ବିସ୍ତାରନ୍ତି ।
(ର: କ:)

ଏହି ଅଳଙ୍କାରର ପ୍ରୟୋଗ ପାଇଁ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଆବଶ୍ୟକ ହୋଇଥାଏ । କୌଣସି ପ୍ରାଣୀ ବା ବସ୍ତୁର ରୂପ ବା କ୍ରିୟାର ସାଧାରଣ ବର୍ଣ୍ଣନା ଏହି ଅଳଙ୍କାରର ସାଧକ ହୁଏ ନାହିଁ ।

(୧୦) ଦେଖ ବଳୀବର୍ଦ୍ଦ ଗାଈ-ନନ୍ଦନ,
କରୁଅଛି ମୁହିଁ ତୃଣ ଚର୍ବଣ,
ଗୋଟିଏ ଲାଙ୍ଗୁଳ ଅଛଇ ବଳି,
ଶିରରେ ଆବର ବିଷାଣ ଦୁଇ ।

ଏଠାରେ ଜୀବବିଶେଷର ସ୍ୱରୂପ ଏବଂ କ୍ରିୟାର ବର୍ଣ୍ଣନା ହୋଇଥିଲେ ସୁଦ୍ଧା, ସ୍ୱଭାବୋକ୍ତି ଅଳଙ୍କାର ନାହିଁ; କାରଣ ଏହି ବର୍ଣ୍ଣନାରେ ଚମତ୍କାରିତାର ଅଭାବ ।

# ବିରୋଧାଭାସ *

ବିରୋଧ ଜନ୍ମିଲେ ବାକ୍ୟେ ବିରୋଧ ଆଭାସ,
ପରିହାର କରି ତାର କରନ୍ତି ଉଲ୍ଲାସ ।
ତେଜରେ ମିତ୍ର ତେଜସ୍ୱୀ ଅମିତ୍ରବିଜୟୀ,
ବଧୂର-ଚକ୍ଷୁ ଏ ନୃପ ଧୂର-ଚକ୍ଷୁ ଏହି । (ସୁବଳ)

ଯହିଁ ଦୁଇ ବାକ୍ୟାର୍ଥ ମଧ୍ୟରେ ଏପରି ଶବ୍ଦବିନ୍ୟାସ ହୋଇଥାଏ ଯେ ସେ ଦୁଇଟିର ଅର୍ଥ ପରସ୍ପରବିରୋଧୀ ମନେ ହୁଏ, କିନ୍ତୁ ପ୍ରକୃତ ଅର୍ଥ ଗ୍ରହଣ କଲେ ବିରୋଧର ଅବସାନ ହୁଏ, ତେବେ ସେଠାରେ ବିରୋଧାଭାସ ଅଳଙ୍କାର ହୁଏ; ଯଥା—

(୧) ଏକାନ୍ତେ ମିତ୍ର ସଙ୍ଗତେ କ୍ଷଣେ ନ ବସିଲ,
ଏକାନ୍ତେ ମିତ୍ରରେ କେତେ ସ୍ତୁତି ପ୍ରକାଶିଲ ।
(ପ୍ରେ: ସୁ: ନ:)

ମିତ୍ର ସଙ୍ଗରେ ନ ବସି ମିତ୍ରକୁ ସ୍ତୁତି କରିବା ଆପାତତଃ ପରସ୍ପରବିରୁଦ୍ଧ ମନେହୁଏ । ମାତ୍ର ଦ୍ୱିତୀୟ 'ମିତ୍ର'କୁ ସୂର୍ଯ୍ୟ ଅର୍ଥରେ ଗ୍ରହଣ କଲେ ବିରୋଧ ରହେ ନାହିଁ ।

ବିରୋଧାଭାସ ଅଳଙ୍କାରରେ ପ୍ରକୃତ ବିରୋଧ ନ ଥାଏ । ଆପାତତଃ ବିରୋଧ ଥିଲା ପରି ବୋଧହୁଏ ।

---

* ଜାତିଶ୍ଚତୁର୍ଭିର୍ଜାତ୍ୟାଦ୍ୟୈର୍ଗୁଣୋ ଗୁଣାଦିଭିସ୍ତ୍ରିଭିଃ
କ୍ରିୟା କ୍ରିୟା ଦ୍ରବ୍ୟାଭ୍ୟାଂ ଯଦ୍ ଦ୍ରବ୍ୟଂ ଦ୍ରବ୍ୟେଣ ବା ମିଥଃ
ବିରୁଦ୍ଧମେବ ଭାସେତ ବିରୋଧୋଽସୌ ଦଶାକୃତିଃ । [ ସା:ଦ: ]

(୨) ତରଣିର ଗତି ସ୍ଥଗିତ ହୋଇଲା
ବଢ଼ିଲା ତରଣି-ଗତି,
ଜୀବନ ଛାଡ଼ନ୍ତେ ପୁଲକ-ଆବଳୀ
ହୋଇଲା ସୁକାନ୍ତିମତୀ । (ଋଷୋପୂଜା)

ଏଠାରେ ତରଣିର ଗତି ସ୍ଥଗିତ ହେବା ଓ ତରଣିର ଗତି ବଢ଼ିବା ପରସ୍ପରବିରୁଦ୍ଧ ବୋଲି ପ୍ରତୀୟମାନ ହୁଏ, କିନ୍ତୁ ତରଣି ଶବ୍ଦକୁ ନୌକା ଓ ସୂର୍ଯ୍ୟ ଏହିପରି ଭିନ୍ନ ଅର୍ଥରେ ନେଲେ ବିରୋଧ ରହେ ନାହିଁ । ସେହିପରି ଜୀବନ ଛାଡ଼ିବା ହେତୁ ପୁଲକାବଳୀ ସୁକାନ୍ତିମତୀ ହେବା ଦ୍ୱାରା ବିରୁଦ୍ଧ ଅର୍ଥ ପ୍ରତୀୟମାନ ହେଉଅଛି । କିନ୍ତୁ 'ଜୀବନ' ଶବ୍ଦକୁ ଜଳ ଅର୍ଥରେ ଗ୍ରହଣ କଲେ ବିରୋଧ ରହୁନାହିଁ ।

(୩) ବିଭୂତି ବାଞ୍ଛିକ ନୋହି, ବିଭୂତି ବାଞ୍ଛିକ
ବର୍ଜିତ କାମ ଉଦୟ କାମଉଦୟିକ । (ବୈ:ବି:)

ଯେ ବିଭୂତିବାଞ୍ଛିକ ସେ ବିଭୂତିବାଞ୍ଛିକ ନୁହେଁ; ଯେ କାମୋଦୟବର୍ଜିତ, ସେ କାମଉଦୟିକ । ଏପରି ବାକ୍ୟ ବିରୁଦ୍ଧାର୍ଥକ ବୋଲି ପ୍ରତୀତ ହୁଏ ।

କିନ୍ତୁ 'ବିଭୂତି' ଶବ୍ଦକୁ ଐଶ୍ୱର୍ଯ୍ୟ ଓ ଭସ୍ମ ଏହି ଦୁଇ ଅର୍ଥରେ ଏବଂ 'କାମୋଦୟ ବର୍ଜିତ'କୁ ନିଷ୍କାମ ଅର୍ଥରେ ଓ 'କାମ ଉଦୟିକ'କୁ ଅଭୀଷ୍ଟସାଧକ ଅର୍ଥରେ ଗ୍ରହଣ କଲେ ବିରୋଧ ରହୁନାହିଁ । ଏଣୁ ଏଠାରେ ବିରୋଧାଭାସ ଅଳଙ୍କାର ।

## ବିଭାବନା *

### (Effect without cause)

ବିନାକାରଣରେ କାର୍ଯ୍ୟ ହୋଇଲେ ଉତ୍ପନ୍ନ
ବିଭାବନା ଅଳଙ୍କାର କହନ୍ତି ନିପୁଣ ।
ଲାକ୍ଷାରସ ବ୍ୟତିରେକେ ତୁମ୍ଭର ଚରଣ ।
ରକ୍ତ ହୋଇଅଛି ଏହା ଅତ୍ୟନ୍ତ ଶୋଭନ । (ସୁଭଦ୍ର)

କାରଣ ବିନା କାର୍ଯ୍ୟୋତ୍ପତ୍ତି ବର୍ଣ୍ଣିତ ହେଲେ ବିଭାବନା ଅଳଙ୍କାର ହୁଏ ।

ଉଦାହରଣ:—

(୧) ସୁଖେ ପଡ଼େ ପୁଣି ଏଭଳି ବିପାକ
ଏଡ଼େ ବେଗରେ
କେ କହିବ କାହିଁ ଏ ବଜ୍ର ପଡ଼ିଲା
ବିନା ମେଘରେ ? (ଉଷା)

(୨) ବସନ୍ତ ଋତୁ ତ ଅନ୍ତ ହୋଇ ନାହିଁ ଗୋସ୍ୱା
ବଚନ କୋକିଳ କିପା ଛାଡ଼ିଲା ମାଧୁର୍ଯ୍ୟ ? (ବୈ: ବି:)

(୩) ନୁହେଁ ଚନ୍ଦ୍ରକର କରେ ଆହ୍ଲାଦ
ଅମୃତ ନୁହେଁ ସେ ତହୁଁ ସୁଆଦ,
ଚିନ୍ତା ନୁହେଁ, ଜାତ କରେ ବିଷାଦ
ବଢ଼ାଏ ଗରବ ନୁହେଁ ସମ୍ପଦ । (ବି:ଚି:)

---

* ବିଭାବନା ବିନା ହେତୁଂ କାର୍ଯ୍ୟୋତ୍ପତ୍ତିର୍ଯଦୁଚ୍ୟତେ [ସା:ଦ:]

## ବିଶେଷୋକ୍ତି *

(Cause without effect)

କାରଣ ସତ୍ତ୍ୱରେ କାର୍ଯ୍ୟ ହେଲେ ଅନୁତ୍ପନ୍ନ
ବିଶେଷୋକ୍ତି ଅଳଙ୍କାର ଜାଣ ସୂକ୍ଷ୍ମ ଜନ ।
ହୃଦପୁରେ ସ୍ମରଦୀପ ସଦା ଜଳୁଅଛି
ସ୍ନେହକ୍ଷୟ କଦାଚନ ତଥାପି ନୋହୁଛି । (ସ୍ମୃତିକ)

କାରଣ ଥାଇ କାର୍ଯ୍ୟର ଅଭାବ ବର୍ଣ୍ଣିତ ହେଲେ ବିଶେଷୋକ୍ତି ଅଳଙ୍କାର ହୁଏ ।

ଉଦାହରଣ:—

(୧) ଘୋଟି କଡବମୂଳ ଘୋର ଘୋର ଜାଙ୍ଗଳ
ଜହର ତୁଲେ ଡାହା ପିଇଲୁରେ
ଘୁମାଇବାର ସମ୍ଭ- ବନା ନାହିଁକି ଆମ୍ଭ
ସୁଯୋଗ ପିନା ବଞ୍ଚ ଅଇଲୁରେ । ( କ:ସୂ: )

କଡବ ମୂଳ ଘୋଟି, ଘୋର ଜାଙ୍ଗଳ ଘୋର ଜହର ସଙ୍ଗେ ପିଇବା କାରଣ ଥିଲେ ହେଁ କାର୍ଯ୍ୟୋତ୍ପତ୍ତି ( ମୃତ୍ୟୁ ) ନ ହେବା ଏଠାରେ ବର୍ଣ୍ଣିତ ହୋଇଥିବାରୁ ବିଶେଷୋକ୍ତି ଅଳଙ୍କାର ହେଲା ।

(୨) ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଜଡ଼, ଅନ୍ଧ ଚକ୍ଷୁ ଥାଇ,
ହେଲେ ହେଁ ଜାଗ୍ରତ, ଗାଢ଼ ନିଦ୍ରା-ଅଭିଭୂତ,

---

* ସତି ହେତୌଫଲାଭାବୋ ବିଶେଷୋକ୍ତିସ୍ତଥା ଦ୍ୱିଧା । [ ସା:ଦ: ]

ଦରଶି ହୁଅନ୍ତି ଆହା, ମହାଘୋର ତମେ
ମାପସଙ୍ଗେ, ମମତାର ଦୁଷ୍ଟଦ୍ରବ୍ୟ ବନ୍ଧନେ ।

ଚକ୍ଷୁ ଇତ୍ୟାଦି କାରଣ ଥାଇ କାର୍ଯ୍ୟର ( ଦର୍ଶନାଦି ) ଅଭାବ ବର୍ଣ୍ଣିତ ହୋଇଥିବାରୁ ବିଶେଷୋକ୍ତି ଅଳଙ୍କାର ।

## ସମାସୋକ୍ତି *

ପ୍ରସ୍ତୁତରେ ଅପ୍ରସ୍ତୁତ ଅର୍ଥ ଯେବେ ଭାସେ
ସମାସୋକ୍ତି ଅଳଙ୍କାର ସେଠାରେ ପ୍ରକାଶେ ।
ଦୋଷାକର ନାମକୁ ଯେ ସଦା ଅଛି ବହି
ଐନ୍ଦ୍ରୀମୁଖ ଚୁମ୍ବୁଅଛି ରକ୍ତଚନ୍ଦ୍ର ଏହି । (ସ୍ୱକୃତ)

[ ଐନ୍ଦ୍ରୀ = ଇନ୍ଦ୍ର ଅଧିଷ୍ଠିତ ପୂର୍ବଦିଗ; ଦୋଷାକର = ଚନ୍ଦ୍ର । ଦୋଷାକର ଅର୍ଥାତ୍ ଚନ୍ଦ୍ର ଐନ୍ଦ୍ରୀମୁଖ ଅର୍ଥାତ୍ ପ୍ରାଚୀ ଦିଗକୁ ଚୁମ୍ବୁଅଛି । ଏପରି କହିବାଦ୍ୱାରା ଅନୁରାଗୀ ଚନ୍ଦ୍ରର ପରଦାରାସକ୍ତି ରୂପକ ଅପ୍ରକୃତ ଅର୍ଥ ପ୍ରକାଶ ପାଉଅଛି । ]

ସମାନ କାର୍ଯ୍ୟ, ଲିଙ୍ଗ ବା ବିଶେଷଣ ଦ୍ୱାରା ପ୍ରକୃତ ବା ବର୍ଣ୍ଣନୀୟ ବସ୍ତୁଠାରେ ଅପ୍ରକୃତ ବସ୍ତୁର ବ୍ୟବହାର ଆରୋପଣ କରାଗଲେ ସମାସୋକ୍ତି ଅଳଙ୍କାର ହୁଏ ।

ଉଲ୍ଲିଖିତ ଉଦାହରଣଟିରେ ରକ୍ତଚନ୍ଦ୍ରଠାରେ ଅନୁରାଗୀ ନାୟକର ଏବଂ ଐନ୍ଦ୍ରୀ (ପ୍ରାଚୀ ଦିଗ ଠାରେ ନାୟିକାର ବ୍ୟବହାର ଆରୋପ ହୋଇଅଛି । ଚନ୍ଦ୍ର ପୁଂଲିଙ୍ଗ ଓ ପ୍ରାଚୀଦିଗ ସ୍ତ୍ରୀଲିଙ୍ଗ ଏବଂ

---

* ସମାସୋକ୍ତିଃ ସମୈର୍ଯତ୍ର କାର୍ଯଲିଙ୍ଗବିଶେଷଣୈଃ
ବ୍ୟବହାର ସମାରୋପଃ ପ୍ରସ୍ତୁତେଽନ୍ୟସ୍ୟ ବସ୍ତୁନଃ । [ ସାଃଦଃ ]

ନାୟକ ନାୟିକାକୁ ଚୁମ୍ବନ କରେ । ଏଠାରେ ସମାନ କାର୍ଯ୍ୟ ଓ ଲିଙ୍ଗଦ୍ୱାରା ଚନ୍ଦ୍ରଠାରେ ନାୟକର ଓ ପ୍ରାଚୀଦିଗଠାରେ ନାୟିକାର ବ୍ୟବହାର ଆରୋପ କରାଯାଇଅଛି ।

ଉଦାହରଣ:—

(୧) ସମଗର ପଦ୍ମ- ବନେ କମଳିନୀ-
ନୟନୁ ହିମଲୋଚକ
ସରାଗେ ପୋଛିଲେ ନିଜକରେ ଦେବ
ମିହିର ବିଶ୍ୱଦ୍ୟୋତକ । (ପାବଣ)

କମଳିନୀ-ନୟନରୁ ହିମଲୋଚକ ପୋଛିବା କାର୍ଯ୍ୟ ଦ୍ୱାରା ବର୍ଣ୍ଣନୀୟ ବସ୍ତୁ ସୂର୍ଯ୍ୟଙ୍କଠାରେ ନାୟକର ଏବଂ କମଳିନୀଠାରେ ନାୟିକାର ବ୍ୟବହାର ଆରୋପ ହୋଇଥିବାରୁ ସମାସୋକ୍ତି ଅଳଙ୍କାର ହେଲା । ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ 'କର' ଏହି ଶ୍ଳିଷ୍ଟ ପଦଟି ହସ୍ତ ଓ କିରଣ ଉଭୟ ଅର୍ଥରେ ବ୍ୟବହୃତ ହୋଇ ଏହି ଆରୋପର ସାଧକ ହୋଇଅଛି ।

(୨) ଚନ୍ଦ୍ରକାଲିଙ୍ଗନ ସୁଖେ ପ୍ରଫୁଲ୍ଲିତ-
ହୃଦୟ ସରିତପତି
ସରିତଙ୍କ ପ୍ରତି ଅନାଦର କରି
ଠେଲି ଦେଲା ଦୂରକତି । (କାଞ୍ଚନବଧ)

ଚନ୍ଦ୍ରକାଲିଙ୍ଗନ ସୁଖ ହେତୁ ପ୍ରଫୁଲ୍ଲ ହୃଦୟ ସରିତପତି ସରିତକୁ ଅନାଦର କରି ପଛକୁ ଠେଲିଦେବା ଏଠାରେ ବର୍ଣ୍ଣିତ । ବର୍ଣ୍ଣନୀୟ ସରିତପତିଠାରେ ନାୟକର ଓ ସରିତଠାରେ ନାୟିକାର

ଆରୋପ ହେଲେ ଜଣାଯାଏ ଯେ ନାୟକ ପରନାରୀର ଆଲିଙ୍ଗନରେ ପ୍ରଫୁଲ୍ଲ ହୃଦୟ ହୋଇ ନିଜର ପତ୍ନୀପ୍ରତି ଅନାଦର କରିଥାଏ । ଏହି ଅର୍ଥଟି ସରିତପତି ପୁଂଲିଙ୍ଗ ଓ ସରିତ ସ୍ତ୍ରୀଲିଙ୍ଗ ହୋଇଥିବାରୁ ସମ୍ଭବ-ପର ହୋଇଅଛି ।

(୩) ବିମଳା ତଟିନୀ-ତଟ କାନନେ
ବସନ୍ତେ କୋକିଳ ଭ୍ରମର ସ୍ୱନେ
ନଦୀ-କଳକଳ ଶୁଣିଣ ଚଞ୍ଚଳ
ହୁଅଇ ତୋ ମନ; ଗୁହ୍ୟ ବଚନେ
ନଦୀକୁ ରହସ୍ୟ ଭାଷୁ ବିଜନେ । (କବିତାବଳୀ)

ଏଠାରେ ବର୍ଣ୍ଣନୀୟ ବସ୍ତୁ ହେଉଛି ବାୟୁ । "ନଦୀକୁ ବିଜନରେ ରହସ୍ୟ ଭାଷିବା" କାର୍ଯ୍ୟ ଏହି ବାୟୁଠାରେ ଆରୋପ ହୋଇଥିବାରୁ ବାୟୁ ନାୟକରୂପେ ଓ ନଦୀ ନାୟିକା ରୂପେ ବର୍ଣ୍ଣନା କରାଯାଇଅଛି । ସୁତରାଂ ଏଠାରେ ସମାସୋକ୍ତି ଅଳଙ୍କାର ହୋଇଅଛି ।

(୪) ପ୍ରଶାନ୍ତ ନିଶାନ୍ତ କାଳ ବିରାଜେ ଉଜ୍ଜ୍ୱଳେ
ଉଷାର ଭୂଷାର ଶୁଭ୍ର ଲଲାଟ-ମଣ୍ଡଳେ । (ରା:ପ୍ରା:ଦେ:)

ଏହିଠାରେ ବର୍ଣ୍ଣନୀୟ ବିଷୟ ହେଉଛି ଉଷାକାଳ । ଏହା-ଠାରେ ଅପ୍ରାସଙ୍ଗିକ ବିଷୟ 'ଲଲାଟ'ର ଆରୋପ ହୋଇଥିବାରୁ ସମାସୋକ୍ତି ଅଳଙ୍କାର ହେଲା ।

## ବ୍ୟାଜସ୍ତୁତି (Irony)*

ନିନ୍ଦାରୁ ହୋଇଲେ ସ୍ତୁତି ବ୍ୟାଜସ୍ତୁତି ହୋଇ
ସ୍ତୁତିରୁ ନିନ୍ଦା ହୋଇଲେ ଅଳଙ୍କାର ସେହି ।
ପାପୀଙ୍କି ନେଉଛ ସ୍ୱର୍ଗେ; ଗଙ୍ଗେ, ଏ କି ଧର୍ମ
ତୁମ୍ଭର ତ ବଡ଼ ବୁଦ୍ଧି, ନାହିଁ ତୁମ୍ଭ ସମ । (ସୁଗମ)

ନିନ୍ଦା ସ୍ଥଳରେ ସ୍ତୁତି ବା ସ୍ତୁତି ସ୍ଥଳରେ ନିନ୍ଦା କରାଗଲେ ବ୍ୟାଜସ୍ତୁତି ଅଳଙ୍କାର ହୁଏ ।

ଉଦାହରଣ:—

(୧) ଗୁପ୍ତଦାନେ ଦକ୍ଷ ଯହିଁ ନାଗଫେଣି
ମାର ଦାନେ ପୁଣି ମସ୍ତିକା ବେଣୀ ! (ଚିଲିକା)
(ସ୍ତୁତି ସ୍ଥଳରେ ନିନ୍ଦା )

(୨) କେତୁ ବୋଲେ "ମୁହିଁ ଅଟଇ ଢପୋଟି;
କଳାଲୋକଙ୍କର ଜନ୍ମନ୍ତର କୋଠୀ,
ଲଭିଅଛି ମୁହିଁ ବଳେ କଇଁଶରେ
ମୋତେ ପୁଣି କିଏ ବସାଇବ ତଳେ ।" (ଦରବାର)
( ସ୍ତୁତି ସ୍ଥଳରେ ନିନ୍ଦା )

(୩) ନବଦୁର୍ଗବଣ; ଇଷ୍ଟ ଦେବତା ପର ଆଚରଣ । (ଯଦୁମଣି)
( ସ୍ତୁତି ସ୍ଥଳରେ ନିନ୍ଦା )

---

* ନିନ୍ଦାସ୍ତୁତିଭ୍ୟାଂ ବାଗ୍‌ଭ୍ୟାଂ ଗମ୍ୟତ୍ୱେ ସ୍ତୁତିନିନ୍ଦୟୋଃ [ ସା:ଦ: ]

(୫) କ ଅପୂର୍ବ ଆଦର ସେ କରଇ ମୋତେ
କେତେରୂପେ କେତେ ଘର ଯେଘେ ଗୃହତେ । (ମ: ମ:)
( ସୂକ୍ତ ଛନ୍ଦରେ ନିନ୍ଦା )

(୬) ଲୋକଟି ବଡ଼ ଧାର୍ମିକ । ବର୍ଷ ମଧ୍ୟରେ ଚବିଶଟା ଏକାଦଶୀ;
ଭୂଲଶଟା ଥିଲେ ମଧ୍ୟ ଗୋଟାଏ ଗୁଡ଼ ପଣ୍ଡନ୍ତା, ଏ କଥା
କହିବାକୁ ଆମେ ନାରାଜ । ଏକାଦଶୀ ଦିନ ତୁଳସୀପତ୍ର-
ଜଳମାତ୍ର ଅବଲମ୍ବନ । (ଛ: ମା: ଆ:)
( ସୂକ୍ତ ଛନ୍ଦରେ ନିନ୍ଦା )

## ଉଲ୍ଲେଖ *

ଅନେକ ଅନେକ ରୂପେ ଏକକୁ ଦେଖନ୍ତି
ଉଲ୍ଲେଖ ନାମକୁ ହୁଏ ତହିଁ ଅଳଙ୍କୃତ ।
ବ୍ରହ୍ମବାଦୀଙ୍କର ବ୍ରହ୍ମ ଅସୁରଙ୍କୁ କାଳ
ଏକ କୃଷ୍ଣ ଦୃଶ୍ୟ ହେଲେ ବାଳକଙ୍କୁ ବାଳ । (ସୁଗ୍ଗନ)

ଏକ ବିଷୟ ଅନେକ ଲୋକଙ୍କଦ୍ୱାରା ଅନେକ ପ୍ରକାରେ ଉଲ୍ଲିଖିତ ହେଲେ ଉଲ୍ଲେଖ ଅଳଙ୍କାର ହୁଏ ।

ଉଦାହରଣ:—

(୧) ବାବୁ ସେ ଯେ ନବନାଗର କାହ୍ନୁ
ଦେଖି ପାସୋରିବ କାହାର ମନୁ ।
ଶିଶୁକୁ ଦିଶନ୍ତି ଶିଶୁ ପରାୟେ
ନାରୀଙ୍କ ଦୃଷ୍ଟିକ ମଦନ ରାୟେ ।

---

* କ୍ୱଚିଦ୍‌ଭେଦାଦ୍ ଗୃହୀତୃଣାଂ ବିଷୟାଣାଂ ତଥା କ୍ୱଚିତ୍
ଏକସ୍ୟାନେକଧୋଲ୍ଲେଖୋ ଯଃ ସ ଉଲ୍ଲେଖଇଷ୍ୟତେ । [ସା:ଦ:]

ବୃଦ୍ଧଙ୍କୁ ବାଳକ ସ୍ୱଭାବ ମତ
ଜ୍ଞାନୀଙ୍କି ନିର୍ଗୁଣ ରୂପ ଶ୍ରୀପତ
ଭକ୍ତଙ୍କୁ ନନ୍ଦନନ୍ଦନ ପରି
ନାନାରୂପ ଧରେ ମନ୍ଦରଧରୀ । (ମ:ମ:)

ଏକ ବପୁ (ଶ୍ରୀକୃଷ୍ଣ) ଶିଶୁଙ୍କୁ ଶିଶୁପରି, ନାରୀଙ୍କୁ କନ୍ଦର୍ପପରି, ବୃଦ୍ଧଙ୍କୁ ବାଳକପରି, ଜ୍ଞାନୀଙ୍କୁ ନିର୍ଗୁଣ ବ୍ରହ୍ମପରି, ଭକ୍ତଙ୍କୁ ନନ୍ଦନନ୍ଦନ ପରି ଦିଶୁଥିବାର ବର୍ଣ୍ଣିତ ହୋଇଥିବାରୁ ଉଲ୍ଲେଖ ଅଳଙ୍କାର ।

## ଅନନ୍ୱୟ *

ବାକ୍ୟ ମଧ୍ୟରେ ଏକ ପଦାର୍ଥକୁ ଉପମାନ ତଥା ଉପମେୟରୂପେ ବର୍ଣ୍ଣନା କରାଯାଇଥିଲେ ଅନନ୍ୱୟ ଅଳଙ୍କାର ହୁଏ ।
ଉଦାହରଣ:—

(୧) ତହିଁ ସିଂହାସନେ ସୁନ୍ଦରୀ ଆସୀନା
ଜଗତେ ତୁଳନା ସେହି ତାର ସିନା । (ଚିଲିକା)

(୨) ସେ ରୂପ ଗଗନ ଗଗନ ସଦୃଶ
ସାଗର ସାଗରୋପମ
ଅବନୀ ମଣ୍ଡଳେ ସର୍ବ ରାଜଗୁଣେ
ତୁମ୍ଭେ ଏକା ତୁମ୍ଭ ସମ । (ଇନ୍ଦୁମତୀ)

* ଉପମାନୋପମେୟତ୍ୱମେକସ୍ୟୈବ ତ୍ୱନନ୍ୱୟଃ । [ସା:ଦ:]

(ଗ) ରାଧା ପରି ରାଧା ସିନା, ରେ ସଙ୍ଗିନି,
ସୃଷ୍ଟି ମାତରକ ଅଛନ୍ତି ଯେତେକ
ସର୍ବେ ପିତଳ ସେ ସୁନା । (ଗୋପାଳକୃଷ୍ଣ)

## ପ୍ରତୀପ (Reversed Simile) *

ଉପମେୟ ପରି ଉପମାନ ହେଲେ ଉକ୍ତ
ପ୍ରତୀପ ବୋଲି ତାହାକୁ କରନ୍ତି ବିଖ୍ୟାତ ।
ରାମ ମୁଖ ପରି ଚନ୍ଦ୍ର ଶୋଭାକୁ ବହିଛି
ବୃଥାଗର୍ବ ମାନ ତାର ନ ଜାଣେ ଏ କିଛି । (ସୁଢ଼ଳ)

ପ୍ରକୃତ ଉପମାନକୁ ଉପମେୟରୂପେ କଳ୍ପନା କରାଗଲେ ଅଥବା ଉପମାନର ନିଷ୍ଫଳତା ବର୍ଣ୍ଣନା କରାଗଲେ ପ୍ରତୀପାଳଙ୍କାର ହୁଏ ।

ଉଦାହରଣ:—

(୧) ନୀରଦ ଗରଜ ମଧୁରୁ କେତେ
ଅରଜ ନାହିଁତ ମୋ ବନ୍ଧୁ ଲଳିତ ଭାବ ବିଭବୁଁ କହିତେ ।
କ୍ଷଣପ୍ରଭା କେଳି ରୁଚିରକୁ ସଙ୍ଗାଳି କରି ଫୁଲୁଅଛୁ ଯାହା
ମାଳତେଳାଚ୍ଛନ୍ନ ବାଳା ଅପଘନ ଛବିକି ଅଳପ ରୁହାଁ ।

ଉକ୍ତସ୍ଥ ଉପମାନ (କ୍ଷଣପ୍ରଭା) ବର୍ଣ୍ଣନା ପରେ ଉପମେୟ (ମାଳତେଳାଚ୍ଛନ୍ନ ଅପଘନ) କୁ ଉପମାନରୂପେ କଳ୍ପନା କରାଯାଇ ଅଛି ।

---

* ପ୍ରସିଦ୍ଧସ୍ୟୋପମାନସ୍ୟୋପମେୟତ୍ୱଂ ପ୍ରକଳ୍ପନଂ
ନିଷ୍ଫଳତ୍ୱାଭିଧାନଂ ବା ପ୍ରତୀପମିତି କଥ୍ୟତେ । [ସା: ଦ:]

(୨) ପାଞ୍ଚେ ମନ୍ଦର କୁଚ ବଢ଼ିବାରେ
କମ୍ପା ବୁଡ଼ ନ ମଲ ପାପବାରେ
କମ୍ବୁ କଣ୍ଠ ଦେଖି ଅନ୍ତ ଆର୍ତ୍ତିରୁ
ସମ ନୁହେ ବୋଲି ଡାକେ ପ୍ରାତରୁ । (ଲ: ବ:)

ଉପମାନ (ମନ୍ଦର, କମ୍ବୁ)ର ନିକୃଷ୍ଟତା ଏଠାରେ ବର୍ଣ୍ଣିତ ।

(୩) ମାଳମାରେ ବାମା ଗୁନ୍ଥୁ କେଶପାଶ
ଛଡା ମାଳ ସାଜକ କଲା ଉପହାସ । (ଶଳାକା)
ଏଠାରେ ଉପମାନ (ମାଳସାଜ)ର ନିକୃଷ୍ଟତା ବର୍ଣ୍ଣିତ ହୋଇ-
ଥିବାରୁ ପ୍ରତୀପାଳଙ୍କାର ।

(୪) ବଣ୍ଟଚନ୍ଦ୍ର ବଣପାଇଁ     ପ୍ରୀତି ମୂର୍ତ୍ତିମନ୍ତ ହୋଇ-
ଅଣିମାଦ୍ଧ ଦେବ ଅଣିଆଇ ଶୋଇଛି,
ପାଣି ଦେବା ଗଣ୍ଡସ୍ଥଳେ   ଶଶୀ କୋକନଦ କୋଳେ
ଚନ୍ଦ୍ରଉଡ଼ିବାର ଶୋଭାକୁ ହସି ଦେଉଛି । (ବା:ଚ:)

ରାଧା ଗଣ୍ଡତଳ ହାତ ଉପରେ ରଖି ଶୋଇବା ଶୋଭା (ଉପମେୟ) ରକ୍ତ ପଦ୍ମ କୋଳରେ ଶୋଇଥିବା ଚନ୍ଦ୍ର (ଉପମାନ)କୁ ହସୁଥିବା ବର୍ଣ୍ଣିତ । ଉପମାନ ଉପମେୟଠାରୁ ନିକୃଷ୍ଟ ବୋଲି ବର୍ଣ୍ଣିତ ହୋଇଥିବାରୁ ପ୍ରତୀପ ଅଳଙ୍କାର ।

## କାବ୍ୟ ଲିଙ୍ଗ *

ପଦାର୍ଥ ହେତୁ ହୋଇଲେ କାବ୍ୟଲିଙ୍ଗ ନାମ,
ମୋର ଚିତ୍ତେ ସେ ଲୋଚନ, କିତ ହେଲୁ କାମ । (ସୂତ୍ର)

* ହେତୋର୍ବାକ୍ୟ ପଦାର୍ଥତ୍ୱେ କାବ୍ୟଲିଙ୍ଗଂ ନିଗଦ୍ୟତେ । [ସା:ଦ:]

'କୌଣସି ବାକ୍ୟାର୍ଥ ବା ପଦାର୍ଥ ଉକ୍ତି ବିଷୟ ପ୍ରତି କାରଣ ହେଲେ କାବ୍ୟଲିଙ୍ଗ ଅଳଙ୍କାର ହୁଏ ; ଯଥା :—

(୧) ପତି ଚରଣାମୃତେ ରଖିଲ ଆଶା,
ଗଣିଲ ନାହିଁ ଆଉ କ୍ଷୁଧା ପିପାସା । (ତପସ୍ୱିନୀ)

ଏଠାରେ ସୀତାଙ୍କର 'ପତି ଚରଣାମୃତରେ ଆଶା ରଖିବା' ହେଉଛି ତାଙ୍କ 'କ୍ଷୁଧା ପିପାସା ନଗଣିବା'ର କାରଣ । ଅମୃତ ଦ୍ୱାରା କ୍ଷୁଧା ପିପାସା ରହେନାହିଁ । ଅତଏବ ଏଠାରେ କାବ୍ୟଲିଙ୍ଗ ଅଳଙ୍କାର ।

(୨) ରେ ଦକ୍ଷିଣ ହସ୍ତ ତୁହି ନର୍ଦ୍ଦମ୍ ରାମର,
ବଞ୍ଚାଇବା ପାଇଁ ମୃତ ଶିଶୁ ବ୍ରାହ୍ମଣର ।
ଖଡ୍‌ଗ ପ୍ରହାର କର ଶୂଦ୍ରମୁନି ଶିରେ,
ଦୟାମାୟା କାହିଁ ତୋର ଏହି ଜଗତରେ ?
ତୁହି ତ ରେ ଅନାୟାସେ ପେଷିଲୁ କାନନେ
ପୂର୍ଣ୍ଣଗର୍ଭ ବୈଦେହୀଙ୍କୁ ନିର୍ଘୃଣ ମନେ । (ଉ:ରା:ଚ:)

ଏଠାରେ 'ପୂର୍ଣ୍ଣଗର୍ଭ ବୈଦେହୀଙ୍କୁ ନିର୍ଘୃଣ ମନରେ କାନନକୁ ପ୍ରେରଣ କରିବା' ଶୂଦ୍ର ମୁନିର ଶିରରେ ଖଡ୍‌ଗ ପ୍ରହାର କରିବାର କାରଣ ରୂପେ ବର୍ଣ୍ଣିତ । ତେଣୁ କାବ୍ୟଲିଙ୍ଗ ଅଳଙ୍କାର ।

(୩) ତହିଁ କୁବେର ଶାପେ ହୋଇ ପ୍ରେରିତ,
ରହିଲା ଯକ୍ଷ ଦୁଃଖେ ଆତୁର ଚିତ୍ତ ।
ବରଷର ଅନ୍ତେ ହେବ ଶାପ ମୋଚନ,
ବରଷର ଅନ୍ତେ କାନ୍ତା ସଙ୍ଗେ ମିଳନ । (ମେ:ଦୂ:)

ଶେଷ ଦୁଇପଙ୍‌କ୍ତି ପକ୍ଷର ଆତୁରଚିତ୍ତତାର କାରଣରୂପେ ବର୍ଣ୍ଣିତ ।

(୪) ବୃଥା ହେଲ ଈର୍ଷାର ସେ ଆଶା,
ଯେଣୁ ତୁମ୍ଭେ ଏକ କର୍ଣ୍ଣେ କାନକୁହାବାଣୀ,
ଶୁଣି ଅନ୍ୟ କର୍ଣ୍ଣ ମୁକ୍ତ ରଖିଲ ଗୁପତେ
ଶୁଣିବାକୁ ଅଭିଯୁକ୍ତ କଥା ଯଥାକାଳେ । (ମହାଯାତ୍ରା)

"ଏକ କର୍ଣ୍ଣରେ କାନକୁହା ବାଣୀ ଶୁଣି ଅନ୍ୟ କର୍ଣ୍ଣଟି ଅଭିଯୁକ୍ତ କଥା ଯଥାକାଳରେ ଶୁଣିବାକୁ ଗୁପ୍ତରେ ରଖିବା" ଈର୍ଷାର ଆଶା ବୃଥା ହେବାର କାରଣରୂପେ ବର୍ଣ୍ଣିତ । ତେଣୁ କାବ୍ୟଲିଙ୍ଗ ଅଳଙ୍କାର ।

## ବକ୍ରୋକ୍ତି (Equivogue) *

ଜଣକର ଅଭିପ୍ରେତାର୍ଥ ଅପର ବ୍ୟକ୍ତିଦ୍ୱାରା ଭିନ୍ନ ଅର୍ଥରେ ପରିଣତ ହେଲେ ବକ୍ରୋକ୍ତି ଅଳଙ୍କାର ହୁଏ ।

(୧) ତାପସଙ୍କ ସ୍ତୁତି ବଚନ ବୋଇଲେ
ନରପତି ଉପହାସେ
"ଧନ୍ୟ ହେ ତାପସ, କର୍ମଫଳ ରଖି
ଦେଇ ଯାଉଛ ମୋ ପାଶେ ।

* ଅନ୍ୟସ୍ୟାନ୍ୟାର୍ଥକଂ ବାକ୍ୟମନ୍ୟଥା ଯୋଜୟେଦ୍ ଯଦି
ଅନ୍ୟଃ ଶ୍ଳେଷେଣ କାକ୍ୱା ବା ସାବକ୍ରୋକ୍ତିସ୍ତତୋ ଦ୍ୱିଧା [ସାଃ ଦଃ]

ପୁଚ୍ଛବଂଶ ହେବ ବସ୍ତୁତ-ବଶ୍ରୁତ—
ଖ୍ୟାତ ଜାର-ସନ୍ତାନେ ।”
ଶୁଣି ବସୁଦ୍ଧାର ଆଶାଲତା ନବ-
ପଲ୍ଲବିତ ହେଲା ପ୍ରାଣେ ।
‘ଜାର’ ଶବ୍ଦ ‘ଯାର’ ବୁଝିଲା ଅବଳା
ଅକ୍ଷର ଭେଦ ନ ବାଣ । (ପ୍ର: ବ:)

ଶକୁନ୍ତଳା—

(୨) ସୁଧା କଣ କାହିଁ ପାଇବ, ତା ପଣ
ଥାଏ ପୂର୍ଣ୍ଣ ଶଶଧରେ !

ଦୁଷ୍ମନ୍ତ—

ସେତ ସକଳଙ୍କ ପୂର୍ଣ୍ଣ ଅଛି ସୁଧା
ଅକଳଙ୍କ ତୋ ଅଧରେ । (ପ୍ର: ବ:)

(୩) ବସ କ୍ଷଣେ କ୍ଷଣ ଆସନ୍ତୁ ଏତ୍ରାଷ ଭୂଷଣ ମନ୍ଥଳା ।
ଢଂଶପାଣି ଲୁଣି ଛଣାନ କଲେଣି ଏ ବନେ କ ବସା ?
ବେଦେହୀ କନ୍ଥ ନ ବୁଝି କ ସେ ନୋହୁ ଧବରେ ଏ ଭ୍ରାଷା ।
ବୋଲେ ଲଙ୍କପତି ଏଥି ଗତାଗତ କରନ୍ତୁ ବୃକ୍ଷ କ ?
ବଲ୍ଲଭେ କହଇ ଗ୍ୟବଟି ସେନ୍ଥ ଭ୍ରଟିତ ଜାନକୀ ।
ଢଚନ ବାଣୀ ଶୁଣିଲା ଦୈତ୍ୟ ଭଣି ତୁଚ୍ଛତ ମାନୁଷୀ,
ବାରିଧିବାସୀ ମର୍ତ୍ତ୍ୟ ସେ ସ୍ଥଳେ ଆସି ତୋ ଯଙ୍ଗେ ବଳସି ।

(ବୈ: ବି:)

(୪) ଶ୍ରୀକୃଷ୍ଣ ବୋଇଲେ ଶୋକ ନ କର ସୁନ୍ଦରୀ
ମୂର୍ତ୍ତି ଯେ ମାଧବ ଆସିଅଛୁ ତୋର ପୁରୀ ।
ରାଧିକା ବୋଇଲେ ବୁଢ଼ା ହୋଇଲୁକି ବାଇ
ବସନ୍ତ କାଳକୁ ସିନା ମାଧବ ଯେ କହି ।
ଆମ୍ରବନ ଯେ ଚଇତ୍ର ବୈଶାଖ ହୁଅନ୍ତି
ବସନ୍ତ କୋକିଳ ବନେ କେଳି କରୁଥାନ୍ତି । ଇତ୍ୟାଦି
(ଭୂତକେଳି)

ଉଲ୍ଲିଖିତ ଉଦାହରଣଗୁଡ଼ିକରେ ଶ୍ଳେଷମୂଳକ ବକ୍ରୋକ୍ତି; କାରଣ ଏଥିରେ ଶବ୍ଦମାନଙ୍କର ଅର୍ଥରେ ଅର୍ଥାନ୍ତର କଳ୍ପିତ ହୋଇଅଛି ।

କାକୁ ଦ୍ୱାରା ମଧ୍ୟ ଅର୍ଥାନ୍ତର କଳ୍ପିତ ହୋଇପାରେ । ସେଠାରେ କାକୁମୂଳକ ବକ୍ରୋକ୍ତି ହୁଏ; ଯଥା:—

(୫) ଶକୁନ୍ତଳା—

ନ ଜାଣଇ ମୁଗ୍ଧ କାନନ ବାସିନୀ
ରଚନାଟି ସୁଧା କଣ ?

ଦୁଷ୍ମନ୍ତ—
ସତ କହିଲଯେ ସୁଧାସୁଭାଷିଣୀ
ରଚନା ତ ସୁଧା-କଣ । (ପ୍ର: ବ:)

(୬) କହିଲ, "ଦକ୍ଷିଣ ପବନ ବହିଲ
ଭ୍ରମରଜ କର କ୍ଷେପଣ,

ଏ ଉତ୍କଳରୁ ଘନ— ରସଯୁକ୍ତ ହୋଇ
ନ ବହନ୍ତକ ସମୀରଣ ? (କୋ: ବ୍ର: ସୁ:)

## ପ୍ରତିବସ୍ତୂପମା (Parallel Simile)*

ବାକ୍ୟ ଦୁଇ ତୁଲ୍ୟଧର୍ମ ଯେବେ ରହେ ଜାଣ
ପ୍ରତିବସ୍ତୂପମା ବୋଲି କରନ୍ତି ପ୍ରମାଣ ।
ଚନ୍ଦ୍ରାକୃତି ଧନୁ ମଧ୍ୟେ ରାଘବ ଆନନ,
ପରିବେଶ ମଧ୍ୟସ୍ଥିତ ସୁଧାଂଶୁ ସମାନ । (ସୁଡ଼ଳ)

ପଦାର୍ଥଦ୍ୱୟର ସାଦୃଶ୍ୟ ବୋଧଗମ୍ୟ ହେଉଥିଲେ ଓ ସାଧାରଣ ଧର୍ମର ପଦାର୍ଥ ବା ତାତ୍ପର୍ଯ୍ୟ ଏକ ପ୍ରକାର ହେଉଥିଲେହେଁ ଭିନ୍ନ ଭାବରେ ନିର୍ଦ୍ଦେଶ କରାଯାଇଥିଲେ ପ୍ରତିବସ୍ତୂପମା ଅଳଙ୍କାର ହୁଏ ।

ଉଦାହରଣ—

(୧) ପୁଣ୍ୟ ଭୂମି ନୋହି— ଥିଲେ କି ଏ ବାଳା
ଜନମି ଥାନ୍ତା ଉତ୍କଳେ ?
ନନ୍ଦନ-ସୁନ୍ଦରୀ ସୌଦାମିନୀ କେବେ
ସ୍ଫୁରେ କି ବସୁଧା ତଳେ ?
( ଯଯାତିକେଶରୀ )

---

* ପ୍ରତିବସ୍ତୂପମା ସା ସ୍ୟାଦ୍ ବାକ୍ୟୟୋର୍ଗମ୍ୟସାମ୍ୟୟୋଃ
ଏକୋଽପି ଧର୍ମଃ ସାମାନ୍ୟୋ ଯତ୍ର ନିର୍ଦ୍ଦିଶ୍ୟତେ ପୃଥକ୍ । [ସା:ଦ:]

ପୁଣ୍ୟଭୂମି ବ୍ୟତୀତ ଅନ୍ୟତ୍ର ଏ ବାଳାର ଜନ୍ମ ହୋଇ ନ ପାରେ ଓ ନିଦଣସୁନ୍ଦରୀ ସୌଦାମିନୀର ବସୁଧାତଳରେ ସ୍ଫୁରଣ ହୋଇ ନ ପାରେ—ଏହି ଦୁଇ ସଦୃଶ ବାକ୍ୟରେ ସାଧାରଣ ଧର୍ମ 'ଜନ୍ମ ହେବା' ଭିନ୍ନ ଆକାରରେ (ଜନ୍ମିବା, ସ୍ଫୁରିବା) ନିର୍ଦ୍ଦିଷ୍ଟ । ତେଣୁ ପ୍ରତିବସ୍ତୂପମା ।

(୨) କନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ
କେବେ ରସିକ ଛୁଡ଼େ ?
ମଧୁ ଥିଲେ ପୁଷ୍ପେ ଯତନେ
ଖୋଜି ମଧୁପ କାଢ଼େ ।
(ଚ: ସ୍ତ:)

ଏଠାରେ ରସିକ ରୂପକୁ ଛାଡ଼େ ନାହିଁ ଓ ମଧୁପ ପୁଷ୍ପରୁ ମଧୁ କାଢ଼େ—ଏ ଦୁଇ ସଦୃଶ ବାକ୍ୟର ସାଧାରଣ ଧର୍ମ (ନ ଛାଡ଼ିବା, କାଢ଼ିବା) ଭିନ୍ନ ଆକାରରେ ନିର୍ଦ୍ଦେଶ କରାଯାଇଅଛି ।

## ଅପହ୍ନୁତି *

ପ୍ରସିଦ୍ଧକୁ ପ୍ରତିଷେଧି ଅନ୍ୟରୂପେ ଯେବେ,
କହି, ଅପହ୍ନବ ଅଳଙ୍କାର ହୁଏ ତେବେ ।
ନୁହଇ ଏ ଚନ୍ଦ୍ର, ତେବେ ଅନ୍ୟ ଏକ କନ୍ଦ,
ସ୍ଫୁଟିତ ହୋଇଛି ବ୍ୟୋମ-ଗଙ୍ଗା-ସରୋରୁହ । (ସ୍ଵୃତନ)

* ପ୍ରକୃତଂ ପ୍ରତିଷିଧ୍ୟାନ୍ୟସ୍ଥାପନଂ ସ୍ୟାଦପହ୍ନୁତିଃ [ସା:ଦ:]

ପ୍ରକୃତ ଅର୍ଥାତ୍ ବର୍ଣ୍ଣନୀୟ ବସ୍ତୁର ସ୍ୱରୂପ ପ୍ରତିଷେଧ ପୂର୍ବକ ଅପ୍ରକୃତ ବସ୍ତୁ (ଅର୍ଥାତ୍ ଉପମାନ)ର ସ୍ୱରୂପ ଉପସ୍ଥାପିତ ହେଲେ ଅପହ୍ନୁତି ଅଳଙ୍କାର ହୁଏ । ଏହା ଦ୍ୱିବିଧ ହୋଇପାରେ । କୌଣସିଠାରେ ପ୍ରଥମେ ନିଷେଧ, ପରେ ଉପସ୍ଥାପନ । ଅନ୍ୟ କୌଣସିଠାରେ ପ୍ରଥମେ ଉପସ୍ଥାପନ, ପରେ ନିଷେଧ; ଯଥା:—

(୧) ବସ୍ତୁ ନୁହଇ ସେ ଅଟଇଟି ଧୂମ,
ଅନ୍ୟ ନାମ ତାର ଆକାଶ-କୁସୁମ । (ଚିଲିକା)

ପ୍ରକୃତ ବା ବର୍ଣ୍ଣନୀୟ ବିଷୟ ହେଉଛି, ସାଂସାରିକ ସୁଖ । ତାହାକୁ ନିଷେଧ କରି ତାହାଠାରେ ଧୂମ ଓ ଆକାଶ-କୁସୁମ ଉପସ୍ଥାପିତ କରାଯାଇଅଛି । ତେଣୁ ଏଠାରେ ଅପହ୍ନୁତି ଅଳଙ୍କାର । ଏଠାରେ ଆଗେ ନିଷେଧ, ପରେ ଉପସ୍ଥାପନ ।

(୨) ଅର୍ଦ୍ଧେନ୍ଦୁ-ଲଲାଟେ ସିନ୍ଦୂର-ବିନ୍ଦୁ ରମଇ ଆଖି;
ନୁହଇ ସିନ୍ଦୂର, ରହିଛି ସୂର-ହୃଦୟ ଲାଗି । (ଚା:ଘା:)

ପ୍ରକୃତ ବସ୍ତୁ ହେଉଛି ଲଲାଟର ସିନ୍ଦୂର ବିନ୍ଦୁ । ତାହାକୁ ପ୍ରତିଷେଧ କରାଯାଇ ତାହାଠାରେ ସୂରହୃଦୟର ଆରୋପ ହୋଇଅଛି । ଅତଏବ ଏଠାରେ ଅପହ୍ନୁତି ଅଳଙ୍କାର ।

(୩) ସୀତା ବୋଇଲେ, ତମର ମଧୁର ଏ ସ୍ୱଚ୍ଛନୀର
ନୀର ନୁହେ, ଜନନୀର କ୍ଷୀର ପ୍ରତ୍ୟକ୍ଷେ,
ଗିରି-ସ୍ତନୁ ବିନିସୃତ ହୋଇ ଆସୁଛି ଅମୃତ-
ଧାର ପରି ହୀତା-ମୃତକଳପା ଲକ୍ଷ୍ୟେ,

ଓହୋ, ତୁ ତ ମୋ ମାଆ ଏ ଦେଶେ
ମୋ ଦୁଃଖେ କଦର୍ଣ୍ଣବକ୍ଷା ତମସା ବେଶେ । (ତପସ୍ୱିନୀ)

ଏଠାରେ ତମସାର ସ୍ୱରୂପକୁ ପ୍ରତିଷେଧ କରାଯାଇଅଛି ଓ ତାହାକୁ ଜନନୀର କ୍ଷୀର ବୋଲି କୁହାଯାଇ ଥିବାରୁ ଅପହ୍ନୁତି ଅଳଙ୍କାର । ଏଠାରେ ମଧ୍ୟ ଆଗେ ନିଷେଧ, ପରେ ଆରୋପ ।

(୪) କିଂଶୁକ କୁସୁମ ନୁହଇ, ଏ କାମ ଅର୍ଦ୍ଧଚନ୍ଦ୍ର ବାଣପରାଏ
କାନ୍ତାର୍ଥିନୀ ନାରୀ ଅଙ୍ଗକୁ ବିଦାରି ହୋଇଛି ମହାରଙ୍ଗ ମୟେ ।
(ର:କ:)

ଏଠାରେ କିଂଶୁକ କୁସୁମକୁ କୁସୁମ ବୋଲି ନିଷେଧ କରାଯାଇ ପରେ କାମର ଅର୍ଦ୍ଧଚନ୍ଦ୍ର ବାଣ ବୋଲି ଆରୋପ କରାଯାଇଥିବାରୁ ଅପହ୍ନୁତି ଅଳଙ୍କାର ହୋଇଅଛି ।

## ସ୍ମରଣ *

ସଦୃଶ ସ୍ମୃତି ଯୋଗରୁ ହୁଅଇ ସ୍ମରଣ
ସୀତା-ମୁଖ ଦେଖି ଭୃଙ୍ଗ ଗଲେ ପଦ୍ମବନ । (ସୁଜନ)

ଏକ ବସ୍ତୁର ଅନୁଭବ ହେତୁରୁ ତତ୍ସଦୃଶ ଅନ୍ୟ ବସ୍ତୁର ସ୍ମରଣ ବର୍ଣ୍ଣିତ ହୋଇଥିଲେ ସ୍ମରଣାଳଙ୍କାର ହୁଏ । ଏକ ବସ୍ତୁର ଅନୁଭୂତିରୁ ତତ୍ବିରୋଧୀ ବସ୍ତୁର ସ୍ମରଣରେ ମଧ୍ୟ ଏହି ଅଳଙ୍କାର ହୁଏ; ଯଥା:—

* ସଦୃଶାନୁଭବାଦ୍ ବସ୍ତୁ ସ୍ମୃତିଃ ସ୍ମରଣ ମତ୍ୟେତ [ସା:ଦ:]

(୧) ତୃଷାତୁର ଚକୋରୀ ଗୃହେ ଯଥା ବସି
ସ୍ମରେ କମଳମା-ହସିତ ସରସୀ
ସେହି ରୁକ୍ଷ ଦୃଶ୍ୟେ ସ୍ନିଗ୍ଧଛବି ତୋର
ନେହାଣିଥି ସ୍ମୃତି କରୁଥିଲା ମୋର । (ଚିଲିକା)

ରାଜସ୍ଥାନର ରୁକ୍ଷ ଦୃଶ୍ୟର ଅନୁଭୂତ ତାହାର ବିରୋଧୀ ଚିଲିକାର ସ୍ନିଗ୍ଧଛବିର ସ୍ମୃତି ଜାଗରିତ କରିଥିବା ବର୍ଣ୍ଣିତ । ଏଣୁ ଏଠାରେ ସ୍ମରଣାଳଙ୍କାର ।

(୨) ଚନ୍ଦ୍ରିକା ସ୍ପନ୍ଦନେ ଗିରିନ୍ଦ୍ରର ଶୋଭା
ଅପ୍ସରୀଏ ଅନୁଭବି,
ସ୍ମରିଲେ ସୁଜନ୍ମ- କାଳୀନ ମନ୍ଦର-
କ୍ଷୁଭିତ କ୍ଷୀରୋଦଚ୍ଛବି । (ଉର୍ବଶୀ)

ଚନ୍ଦ୍ରିକାଶୋଭିତ ଗିରିନ୍ଦ୍ରର ଶୋଭା ଦର୍ଶନରେ ଅପ୍ସରାଗଣ ମନ୍ଦରବିକ୍ଷୋଭିତ କ୍ଷୀରସାଗରର ସ୍ମୃତି ଜାଗରିତ ହୋଇଥିବା ବର୍ଣ୍ଣିତ । ଏଣୁ ଏହା ସ୍ମରଣାଳଙ୍କାର ।

(୩) ସୁକୁମାରୀ-କକ୍ଷ- କଳସ ସଭିଉର
କରାଇଲା ଆମନ୍ତ୍ରଣ,
ଶମ୍ପାସହଚର କୁଳିଶ, ନଳିନୀ-
କଣ୍ଟକ ନାଳ ସ୍ମରଣ । (ପ୍ର:ବ:)

ସୁକୁମାରୀ ଶକୁନ୍ତଳାଙ୍କ କକ୍ଷସ୍ଥିତ କଳସ ଦର୍ଶନରେ ଦୁଷ୍ମନ୍ତଙ୍କ ମନରେ ବିଦ୍ୟୁତ୍‌ସଙ୍ଗୀ ବଜ୍ର ଓ କଣ୍ଟକନାଳସଂଯୁକ୍ତ ନଳିନୀର ସ୍ମୃତି ବର୍ଣ୍ଣିତ ହୋଇଥିବାରୁ ଏଠାରେ ସ୍ମରଣାଳଙ୍କାର ।

(୪) ଦେଖି ବରାଙ୍ଗୀର ନୀଳାମ୍ବରଶୋଭି
ସୁରୁଚିର ଅଙ୍ଗଲତିକା ।
ସ୍ମରିଲେ ଗୁଣୀଏ ପରଶିତ ନୀଳ-
ସିନ୍ଧୁ-ହିଲ୍ଲୋଳେ ଚନ୍ଦ୍ରିକା । (ପାବଣି)

ବରାଙ୍ଗୀର ଶରୀର ନୀଳଶାଢ଼ୀରେ ଆବୃତ ଥିବାରୁ ଯେଉଁ ସୌନ୍ଦର୍ଯ୍ୟ ପ୍ରକାଶ ପାଉଥିଲା, ନୀଳସମୁଦ୍ରକଲ୍ଲୋଳରେ ଚନ୍ଦ୍ରିକା ଯେଉଁପରି ସୌନ୍ଦର୍ଯ୍ୟ ପ୍ରକାଶ କରେ । ନୀଳାମ୍ବରଶୋଭି ଅଙ୍ଗଲତିକା ଦର୍ଶନରେ ନୀଳସିନ୍ଧୁ ହିଲ୍ଲୋଳରେ ଚନ୍ଦ୍ରିକାର ସ୍ମରଣ ବର୍ଣ୍ଣିତ । ଅତଏବ ଏଠାରେ ସ୍ମରଣାଳଙ୍କାର ।

(୫) ଦେଖିଲି ମୋ ଭଗିନୀଙ୍କ ବଦନ ମଣ୍ଡଳ
ହୋଇଥିଲା ନବ ପ୍ରେମ-ମନ୍ଦାକ୍ଷେ ପାଟଳ,
ଉପୁଜି ତହିଁରେ ନବ ଘର୍ମକଣାଚୟ
ରଚନ ଜ୍ୟୋତିରେ ହୋଇଗଲା ଜ୍ୟୋତିର୍ମୟ;
ତୋ ସ୍ୱିନ୍ନ ଲଲାଟେ ଆଜ ସୁଧାଂଶୁ କିରଣ
ଦେଖି ସଖି, ହେଉଅଛି ସେ କଥା ସ୍ମରଣ । (ତପସ୍ୱିନୀ)

ସଖୀଙ୍କ ସ୍ୱେଦଯୁକ୍ତ ଲଲାଟରେ ଚନ୍ଦ୍ରକିରଣ ଦେଖି ବିବାହ କାଳରେ ଭଗିନୀଙ୍କ ଲଜ୍ଜାପାଟଳ ମୁଖମଣ୍ଡଳର ସ୍ମୃତି ସୀତାଙ୍କ ହୃଦୟରେ ଜାଗିଥିବା ବର୍ଣ୍ଣିତ ।

## ନିଦର୍ଶନା *

ସଦୃଶ ଦୁଇ ବାକ୍ୟରେ ଐକ୍ୟ ଆରୋପଣ
ନିଦର୍ଶନା ବୋଲି ତାକୁ କହନ୍ତି ପ୍ରବୀଣ ।

---

* ସମ୍ଭବନ୍ ବସ୍ତୁସମ୍ବନ୍ଧୋଽସମ୍ଭବନ୍ ବାପି କୁତ୍ରଚିତ୍
ଯତ୍ର ବିମ୍ବାନୁବିମ୍ବତ୍ୱଂ ବୋଧୟେତ୍ସା ନିଦର୍ଶନା । [ସାଃ ଦଃ]

ଡାଗା ଜନଠାରେ ଯାହା ବର୍ତ୍ତିଛୁ ସାଧୁତା
ସେହ୍ନ ପିନା ପୂର୍ଣ୍ଣଚନ୍ଦ୍ରେ କଳଙ୍କଶୂନ୍ୟତା । (ସୂଡ଼ନ)

ଏକ ବିଷୟର ବିଷୟାନ୍ତର ସହିତ ସମ୍ବନ୍ଧ (ସମ୍ଭବପର ବା ଅସମ୍ଭବ ହେଲେ ମଧ୍ୟ) ଯଦି ବିମ୍ବପ୍ରତିବିମ୍ବ ଭାବ ଜାଗ୍ରତ କରେ, ତେବେ ନିଦର୍ଶନା ଅଳଙ୍କାର ହୁଏ । ଏହି ସମ୍ବନ୍ଧ ସୁସଙ୍ଗତ ହେବା-ନିମନ୍ତେ ସାଦୃଶ୍ୟ ଅଧ୍ୟାହାର କରିବାକୁ ହୋଇଥାଏ; ଯଥା:—

(୧) ଏ କଠିନ କର୍ମ ଦେଲେ କୁମାରୀକି
ମୁନି କ ବିଚାରି ମନେ
ପାଟ ଦଉଡ଼ିକି ଲଗାଇ ଅଛନ୍ତି
କାନନ ଗଜ ବନ୍ଧନେ । (ପ୍ର:ବ:)

ଏଠାରେ ଦୁଇଟି ବିଷୟ ବର୍ଣ୍ଣିତ । କୁମାରୀ ଶକୁନ୍ତଳାଙ୍କୁ ଜଳବୋହିବାରୂପକ କଠିନ କର୍ମ ଦେବା ଓ ପାଟଦଉଡ଼ିରେ ବନ୍ୟହସ୍ତୀକୁ ବାନ୍ଧିବା—ଏ ଦୁଇଟି ବିଷୟ ମଧ୍ୟରେ ସଙ୍ଗତିପାଇଁ ନିମ୍ନଲିଖିତ ରୂପେ ସାଦୃଶ୍ୟ ଆଣିବାକୁ ହେବ ।

ପାଟଦଉଡ଼ିରେ ବନ୍ୟହସ୍ତୀକୁ ବନ୍ଧନ କରିବା ଯେପରି ଅନୁଚିତ, କୁମାରୀ ଶକୁନ୍ତଳାକୁ ଜଳବହନ କର୍ମରେ ନିଯୁକ୍ତ କରିବା ସେହିପରି ଅନୁଚିତ ।

ଏଠାରେ ସାଦୃଶ୍ୟର ଅଧ୍ୟାହାର କରାଯାଉଥିବାରୁ ନିଦର୍ଶନା ଅଳଙ୍କାର ।

(୨) ଏ ବାଳାକୁ ବନ- ବାସ ସୁହାଇଲେ
ବିଧି ଆହା କ ବିଚାରେ
ଶମୀ ଛେଦିବାକୁ ଲୋଡ଼ିଲେ ପିନା ସେ
ମାଳୋତ୍ପଳ ପତ୍ରଧାରେ । (ଯଯାତି)

ଏଠାରେ ବର୍ଣ୍ଣିତ ବିଷୟ ଦୁଇଟି ହେଉଛି ବାଳକୁ ବନବାସ ସହ୍ୟ କରାଇବା ଓ ଅନ୍ୟଟି ନୀଳୋତ୍ପଳ ପତ୍ରଧାରରେ ଶମୀ ଛେଦନ କରିବା—ଏ ଦୁଇଟିର ସାଦୃଶ୍ୟ ଅଧ୍ୟାହାର କରିବାକୁ ହେଉଅଛି । ଏଠାରେ ନିଦର୍ଶନା ଅଳଙ୍କାର ।

(୩) ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହସ୍ତେ ଦେଲି ଗୋଦାନ ଟେକି
ଜଡ଼ା ମଧ୍ୟରେ ଖଡ଼ା କଲି ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ
ହେ ରାଜା, କି କଲି,
ବିଷ୍ଣୁ ପ୍ରତିମାକୁ ଜଳେ ଥୋଇଲି । (ପଦ୍ମମଣି)

ରାଜାଙ୍କର ବିଷ୍ଣୁ ପ୍ରତିମାକୁ ଜଳେ ଥୋଇବା, ଅନ୍ଧଦେଶରେ ଦର୍ପଣ ବିକିବା, କନ୍ଧ ହସ୍ତରେ ଗୋଦାନ ଦେବା, ଖଡ଼ାକୁ ଜଡ଼ାମଧ୍ୟରେ ରାନ୍ଧିବା, କାମୁଡ଼ା ଘୋଡ଼ା ମୁଖରେ ଚୁମ୍ବନ ଦେବା ଏହି ବିଷୟଗୁଡ଼ିକର ଅଭେଦ ସମ୍ବନ୍ଧ ଅନୁପପନ୍ନ ହୋଇ ସାଦୃଶ୍ୟ ଅର୍ଥ ଆନୟନ କରୁଥିବାରୁ ଏଠାରେ ନିଦର୍ଶନା ଅଳଙ୍କାର ।

(୪) ସ୍ୱୟମ୍ବରେ ଯିବା ପାଇଁ ନିଷେଧିଲେ ବାହାନପତି
ଶୈଳରୁଦ୍ଧ ସ୍ରୋତ ଦଶାକୁ ଭଜିଲା ଜୟନ୍ତ ମତି । (ଉଷା)

ଜୟନ୍ତର ମତି ଶୈଳରୁଦ୍ଧସ୍ରୋତର ଦଶାପରି ଦଶାକୁ ଭଜିଲା—ଏହି ଅର୍ଥ ବୁଝିବାକୁ ହେଉଥିବାରୁ ନିଦର୍ଶନା ଅଳଙ୍କାର । ଏଠାରେ ଜୟନ୍ତର ମତି ଓ ଶୈଳରୁଦ୍ଧ ସ୍ରୋତର ଅଭେଦ ବର୍ଣ୍ଣିତ ।

(୫) ବନ୍ଧୁ କଲି କି ଦୁର୍ବିଦଗ୍ଧଙ୍କୁ ରେ
ବର୍ଜିଲି ଖଣ୍ଡ ଅର୍ଜି ଖାରକୁ ରେ ।
ସମ୍ବାଦ ଗୁଞ୍ଜ ଆଣି ମୁଁ ଫିଙ୍ଗି ଦେଲି
ପାଣିଦନ୍ତ ଶୈବ୍ଳ ମୋତିହାରକୁ ରେ
ଚଢ଼ାଇ ଦେଲି ବୃଦ୍ଧିତ ଚନ୍ଦନ ତରୁ-
ତୁଣ୍ଡେ କର୍କଟୀ ଲଟୀ ଚୁରକୁ ରେ । (କବିସୂର୍ଯ୍ୟ)

ସ୍ୱପତ୍ନୀକୁ ତ୍ୟାଗକରି ବେଶ୍ୟାଠାରେ ଆସକ୍ତି ଏଠାରେ ବର୍ଣ୍ଣିତ । ଏହାକୁ ଖଣ୍ଡଗୁଡ଼ ଛାଡ଼ି ଖାରକୁ ଅର୍ଜିବା, ଗୁଞ୍ଜ (କାଇଁଚ) ସମ୍ବାଦ ମୋତିହାରକୁ ଫିଙ୍ଗିବା, ଚନ୍ଦନ ତରୁରେ କାକୁଡ଼ିଲଟା ଚଢ଼ାଇବା ସମ୍ମିତ ଅଭିନ୍ନ ବୋଲି ବର୍ଣ୍ଣନା କରାଯାଇଅଛି । ଅର୍ଥାତ୍ ପତ୍ନୀକୁ ତ୍ୟାଗକରି ବେଶ୍ୟାସକ୍ତ ହେବା ଯାହା, ଖଣ୍ଡ ଗୁଡ଼ ଖାରକୁ ଅର୍ଜିବା ଇତ୍ୟାଦି ତାହା । ଏହିପରି ସାଦୃଶ୍ୟ ବୁଝିବାକୁ ହେଉଥିବାରୁ ଏଠାରେ ନିଦର୍ଶନା ଅଳଙ୍କାର ।

(୬) ପବସ ଯଜ୍ଞର ହବି ଅରପିଲି ଶ୍ୱାନେ
ପୁଷ୍ପମାଳା ଭ୍ରମେ ମୁହିଁ ଜଡ଼ାଇଲି ଦେହ
ଗରଳ ସ୍ରାବଣୀ କ୍ରୂର ଦୁରନ୍ତ ନାଗୁଣୀ । (ଦ: ବ:)

ଦଶରଥଙ୍କର କୈକେୟୀଙ୍କୁ ବିଶ୍ୱାସ କରିବା, ଯଜ୍ଞଘୃତ ଶ୍ୱାନକୁ ଦେବା ଓ ପୁଷ୍ପମାଳା ଭ୍ରମରେ ନାଗୁଣୀକୁ ଦେହରେ ଗୁଡ଼ାଇବା ସଙ୍ଗେ ସମାନ । ଏହି ଅର୍ଥ ସୂଚିତ ହେଉଥିବାରୁ ନିଦର୍ଶନା ଅଳଙ୍କାର ।

ଦୃଷ୍ଟାନ୍ତ ଅଳଙ୍କାରରେ ବାକ୍ୟଗୁଡ଼ିକ ନିରପେକ୍ଷ ଭାବରେ ଥାଆନ୍ତି; କିନ୍ତୁ ନିଦର୍ଶନା ଅଳଙ୍କାରରେ ବାକ୍ୟଗୁଡ଼ିକ ସାପେକ୍ଷ ଓ ଏମାନଙ୍କର ସାଦୃଶ୍ୟ ବୁଝିବାକୁ ହୁଏ ।

## ସହୋକ୍ତି *

ଜନରଞ୍ଜକ ହୁଅଇ ସହଭାବ ଯହିଁ,
ସହୋକ୍ତି ଯେ ଅଳଙ୍କାର ଶୋଭାପାଏ ତହିଁ ।
ପରାକ୍ରମ ସହ ସ୍ୱଚ୍ଛ କୀର୍ତ୍ତି ଜାତ ହେଲା
ଶତ୍ରୁବର୍ଗ ସହିତରେ ଦିଗନ୍ତକୁ ଗଲା । (ସ୍ୱକୃତ)

ଯାହା ସହିତ ଯାହାର ଅବସ୍ଥିତି ଜନରଞ୍ଜକ, ତାହା ସହିତ ତାହାର ଅବସ୍ଥିତି ବର୍ଣ୍ଣନା କରାଯାଇଥିଲେ ସହୋକ୍ତି ଅଳଙ୍କାର ହୁଏ, ଯଥା:—

(୧) ଶସ୍ତ୍ର ଭୂଷି ଗେଲ୍ଲିତାଣ୍ଟ ଶତ୍ରୁ ନାଭିତଳେ
ଓଟାରି ନେଲେ ତା ମୁନ ଶତ୍ରୁ ପ୍ରାଣସହ । (ମହାଯାତ୍ରା)

(୨) କାମକାଣ୍ଡ ସଙ୍ଗେ ସେ କଟାକ୍ଷ ଗଲା
ଯଯାତି ମରମେ ପଶି
ନବ ପ୍ରେମ-ସ୍ରୋତ ଉଚ୍ଛ୍ୱାସେ ପଡ଼ିଲା
ଧୈର୍ଯ୍ୟତଟ-ମୂଳ ଧସି । (ଯଯାତି)

---

* ସହାର୍ଥସ୍ୟ ବଲାଦେକଂ ଯତ୍ର ସ୍ୟାଦ୍ ବାଚକଂ ଦ୍ୱୟୋଃ ସା ସହୋକ୍ତିଃ ।
[ସା:ଦ:]

(୩) ଶକୁନ୍ତଳା ପୃଷ୍ଠ- ସ୍ୱଭାବ ସହିତ
ଦିବାକର ହେଲେ ଅସ୍ତ
ନବୀନ ପ୍ରକୃତି ସଙ୍ଗେ ତାର ନବ
ସନ୍ଧ୍ୟା ହେଲା ଉପଗତ ।
ଗଗନ ପବନ ବନ ଅଭିନବ
ହେଲା ତା ନବ ଜୀବନେ
ସନ୍ଧ୍ୟାରାଗସହ ନବରାଗ ଜାତ
ହେଲା ନବୀନାର ମନେ । (ପ୍ରାଃ ବଃ)

(୪) ମୋହ ଭାଗ୍ୟ ବଳେ ଯାର ସେ ଦୁର୍ଦ୍ଧର ରୂପ
ସଙ୍ଗେ ସଙ୍ଗେ ଭାଙ୍ଗିଦେଲେ ମୋ ହୃଦ-ସନ୍ତାପ ।
(ତପସ୍ୱିନୀ)

## ବିନୋକ୍ତି *

ବିନୋକ୍ତି ଅଳଙ୍କାରକୁ ବିନା ଯୋଗେ କହି
ବିନା ବିନୟରେ ବିଦ୍ୟା ବିଫଳ ହୁଅଇ । (ସୁଢ଼ଳ)

ଏକ ବସ୍ତୁର ଅଭାବରେ ସୁନ୍ଦର ବସ୍ତୁ ଅସୁନ୍ଦର, ବା ରୁଚିକର ବସ୍ତୁ ଅରୁଚିକର ହେଲେ ବିନୋକ୍ତି ଅଳଙ୍କାର ହୁଏ । ଏଥିରେ ବିନା ଶବ୍ଦ ରହିପାରେ ବା ବିନା ଶବ୍ଦର ଅର୍ଥ ପ୍ରତୀତ ହେଉଥାଏ । ବିନା ଶବ୍ଦ ଥାଇ ମଧ୍ୟ ରଚନାରେ ଚମତ୍କାରିତା ନ ଥିଲେ ଏହି ଅଳଙ୍କାର ହୁଏ ନାହିଁ ; ଯଥାː—

* ବିନୋକ୍ତିର୍ଯଦ୍ ବିନାନ୍ୟେନ ନ ସାଧୂନ୍ୟଦସାଧୁ ବା । [ସାଃ ଦଃ]

(୧) ତିମିର ରଜନୀ ବିନା କରେ କାନ୍ତି
ଶଶିକର ରାଶି ଦିଶଇ ଶୋଭା,
ଜ୍ୟୋତ୍ସ୍ନା ନ ହେଲେ କେବଳ ଯାମିନୀ
ହୁଅଇ କି ଜନମାନସ ଲୋଭା ? (ସ୍ୱର୍ଣ୍ଣରେଖା)

(୨) ସେ ସୁଖୁଁ ବଞ୍ଚିତା ହେଲେ ନ ବଞ୍ଚିବ ସୀତା
ପ୍ରଭୁପାଦ-ସେବା ବିନା ବିଶ୍ୱ ତାକୁ ତିତା,
କାନ୍ତ ବିନା କାନ୍ତାପ୍ରାଣ ସ୍ୱଭାବେ ବିକଳ
ବିକଳ ଜୀବନ ମଣେ ଜଗତ ବିଫଳ । (ତପସ୍ୱିନୀ)

ଏଥିରେ ଶ୍ରୀରାମଙ୍କ ପଦସେବା ବିନା ସୀତାଙ୍କ ପକ୍ଷରେ ଜଗତର ଅସାରତା ଏବଂ କାନ୍ତବିନା କାନ୍ତା-ଜୀବନର ବିଫଳତା ବର୍ଣ୍ଣିତ ।

(୩) ବିମଳା ଗଲରୁ ବିରହ ସନ୍ତାପେ
ବିବର୍ଣ୍ଣ ହେଲା ସେ ରାମା,
ଚନ୍ଦ୍ରିକା ସଜନୀ ଛାଡ଼ିଗଲେ ଭଜେ
କାଳିମା ଦିନା ତ୍ରିଯାମା । (ଯଯାତି)

ଏଠାରେ 'ବିନା' ଶବ୍ଦ ନ ଥିଲେ ହେଁ ବିମଳା ଚାଲିଯିବାରୁ ଅର୍ଥାତ୍ ବିମଳା ବିନା ରାମା ବିବର୍ଣ୍ଣ ହେବା, ଚନ୍ଦ୍ରିକା ଚାଲିଗଲେ ଅର୍ଥାତ୍ ଚନ୍ଦ୍ରିକା ବିନା ତ୍ରିଯାମା ବା ରାତି କାଳିମା ଭଜିବା ବର୍ଣ୍ଣିତ ।

## ଅସଙ୍ଗତି *

କାର୍ଯ୍ୟ ହେତୁ ବିରୋଧରେ ହୁଏ ଅସଙ୍ଗତି
ଆନନ୍ଦେ ବୁଡ଼ିଲା ମନ, ନେତ୍ର ଗଲା ତନ୍ତି । (ସୁଚିନ)

କାର୍ଯ୍ୟ ଓ କାରଣର ବିରୋଧ, ଅର୍ଥାତ୍ କାରଣଥିବା ସ୍ଥଳରେ କାର୍ଯ୍ୟର ଉତ୍ପତ୍ତି ନ ହୋଇ ଅନ୍ୟତ୍ର ତାହାର ଉତ୍ପତ୍ତି ବର୍ଣ୍ଣିତ ହୋଇଥିଲେ ଅସଙ୍ଗତି ଅଳଙ୍କାର ହୋଇଥାଏ ।

"ଆନନ୍ଦେ ବୁଡ଼ିଲା ମନ, ନେତ୍ର ଗଲା ତନ୍ତି ।" ଏହି ଉଦାହରଣରେ ମନ ବୁଡ଼ିଗଲା, କିନ୍ତୁ ବୁଡ଼ିବାର କାର୍ଯ୍ୟ 'ତନ୍ତିବା' ମନଠାରେ ନ ହୋଇ ନେତ୍ରଠାରେ ହୋଇଅଛି । ଏହିପରି କାର୍ଯ୍ୟ-କାରଣର ବିରୋଧ ବର୍ଣ୍ଣିତ ।

ଉଦାହରଣ—

(୧) ଜୀବନ ହରିଲେ ରତିମା ଦେହରୁ
ଦିନମଣି ଶୂନ୍ୟେ ଥାଇ
ଫାଶି ଦେଉଛନ୍ତି ଧୀବରେ ମୀନକୁ
ବଢ଼ଶ ରଜ୍ଜୁ ପକାଇ । (ଶିବୋପୂଜା)

ଯେ ଜୀବହତ୍ୟା କରେ ସେ ଫାଶି ପାଏ । ଦିନମଣି (ସୂର୍ଯ୍ୟ) ରତିମାର ଜୀବନ ହରିବାରୁ ସେ ଫାଶି ପାଇବା ଉଚିତ ଥିଲା; କିନ୍ତୁ ମୀନ ଫାଶି ପାଉଥିବା ବର୍ଣ୍ଣିତ । ତେଣୁ ଏଠାରେ ଅସଙ୍ଗତି ଅଳଙ୍କାର ।

---

* କାର୍ଯ୍ୟକାରଣୟୋର୍ଭିନ୍ନ ଦେଶତାୟାମସଙ୍ଗତିଃ । [ସା: ଦ:]

(୨) ଅବଳା ସେ, ମୁହିଁ କର୍ତ୍ତବ୍ୟେ ବିମୂଢ଼; ସେ ନାରୀ, ମୁହିଁ କାତର;
ବହେ ସେ ଉନ୍ନତ ପୟୋଧର ଯୁଗ; ଗୁରୁକଷ୍ଟ ମୋ ହୃଦର ।
ପୃଥୁଳ ଜଘନ ବହଇ ସେ, ମୁହିଁ ଅକ୍ଷମ ପଦ ଚଳନେ
ଆହାକି ଅଦ୍ଭୁତ ଘଟନା ଘଟିଲା, ଆଜ ଏ ମୋର ଜୀବନେ ।

ନାରୀ ପକ୍ଷରେ କର୍ତ୍ତବ୍ୟବିମୂଢ଼ ଓ କାତର ହେବା ସ୍ୱାଭାବିକ । ସେହିପରି ଯେ ଭାର ବହନକରେ, ସେ କଷ୍ଟ ଅନୁଭବ କରିବା ସ୍ୱାଭାବିକ । କିନ୍ତୁ ଏଠାରେ ଜଣେ ଅବଳା ଉନ୍ନତ ପୟୋଧର ଓ ଜଘନ ବହନ କରୁଥିବା ସ୍ଥଳେ ଅନ୍ୟଜଣେ କର୍ତ୍ତବ୍ୟବିମୂଢ଼ତା, କାତରତା ଓ କଷ୍ଟ ଅନୁଭବ କରୁଥିବାର ବର୍ଣ୍ଣିତ ହୋଇଥିବାରୁ ଅସଙ୍ଗତି ଅଳଙ୍କାର ।

## ଦୀପକ *

ଏକଧର୍ମ ଅନ୍ୟଠାରେ ଯେବେ ଉପକାର
କରଇ, ଦୀପକ ନାମ ହୁଏ ଅଳଙ୍କାର ।
ମଦ ଯୋଗରେ ପ୍ରବଳ ହୁଏ ଦନ୍ତାବଳ
ଉତ୍କଟ ପ୍ରତାପତପୁ ବଳେ ନରପାଳ । (ସୁଭଳ)

ପ୍ରକୃତ ଓ ଅପ୍ରକୃତ ବସ୍ତୁଦ୍ୱୟର ଏକ ଗୁଣ ବା କ୍ରିୟା ସମ୍ବନ୍ଧ ଅନ୍ୱୟ ବର୍ଣ୍ଣିତ ହେଲେ ଦୀପକ ଅଳଙ୍କାର ହୁଏ । ଦେହଳୀ ସ୍ଥିତ ଦୀପ ଯେପରି ଗୃହ ଓ ରଥ୍ୟା ଉଭୟର ଉପକାର ସାଧନ

* ଅପ୍ରସ୍ତୁତ ପ୍ରସ୍ତୁତୟୋର୍ଦୀପକଂ ତୁ ନିଗଦ୍ୟତେ
ଅର୍ଥ କାରକମେକଂ ସ୍ୟାଦନେକାସୁ କ୍ରିୟାସୁ ଚେତ୍ । [ ସା:ଦ:]

କରିଥାଏ, ସେହିପରି ଏହି ଅଳଙ୍କାରରେ ଏକ ଧର୍ମ ( ଗୁଣ ବା କ୍ରିୟା ) ପ୍ରକୃତ (ଉପମେୟ) ଓ ଅପ୍ରକୃତ (ଉପମାନ) ଉଭୟର ଉପଯୋଗୀ ହୋଇଥିବାରୁ ଏହାର ନାମ ଦୀପକ ଅଳଙ୍କାର; ଯଥା:—

(୧) ମାତ୍ର ନିମ୍ନମୁଖ ପୟଃ ପୁଣି ଦୃଢ଼ପ୍ରତିଜ୍ଞ ମନ
ଯେତେ ବାରିଲେହେଁ ମାନନ୍ତି ନାହିଁ ସେ କେବେ ବାରଣ ।
(ଉଷା)

ଦୃଢ଼ପ୍ରତିଜ୍ଞ ମନ ଓ ନିମ୍ନମୁଖ ଜଳ ଦୁହିଁଙ୍କର ଏକଧର୍ମ (କ୍ରିୟା) 'ବାରଣ ମାନନ୍ତି ନାହିଁ' ସହିତ ଅନ୍ୱୟ ଦେଖାଯାଏ । ତେଣୁ ଏଠାରେ ଦୀପକ ଅଳଙ୍କାର ।

ଅନେକ କ୍ରିୟାର ଏକ କାରକ ସଙ୍ଗେ ସମ୍ବନ୍ଧ ଥିଲେ ମଧ୍ୟ ଦୀପକ ଅଳଙ୍କାର ହୁଏ; ଯଥା:—

(୨) ବସନ୍ତରେ ବିରହୀ ଅବଶ
ବସନ୍ତ ଦୂତଭାଷୀରେ ବଶ
ବସଇ, ଉଠଇ, ପିକକୁ କହଇ
ଯୁଗ ସମ ରଜନୀ ଦିବସ । (ପ୍ରେ: ସୁ: ନି:)

(୩) କଣୋଶ୍ୱ ଶ୍ରୀଚରଣ ଦର୍ଶନ ଆଶେ
ଦେବତାଗଣେ ନାନା ଦ୍ରବ୍ୟ ମନାସେ,
ପ୍ରଣମେ ବାରମ୍ବାର ସିଦ୍ଧଚରଣେ,
ଭଜଇ ସଦନୟେ ମାନ୍ତ୍ରିକଗଣେ,
ଔଷଧବିଦ ସେବେ ଅତି ଆଦରେ,
ପୂଜଇ ଗିରିସୁତା ଭକତଭରେ । (ହଂସଦୂତ)

ଏହି ପଦ୍ୟରେ ଏକ କାରକ ( କଣୋଣ୍ୱ କର୍ତ୍ତୃପଦ ) ସହ ଅନେକ କ୍ରିୟା (ମନାସେ, ପ୍ରଣମେ, ଭଜଇ, ସେବେ, ପୂଜଇ) ର ଅନ୍ୱୟ ଅଛି ।

## ସଙ୍କର *

କୌଣସି ବାକ୍ୟରେ ଏକାଧିକ ଅଳଙ୍କାର କ୍ଷୀରନୀର ନ୍ୟାୟରେ ସାପେକ୍ଷ ଭାବରେ ରହିଥିଲେ ସଙ୍କର ଅଳଙ୍କାର ହୁଏ; ଯଥା :—

(୧) ସମରଗ୍ର ପଦ୍ମ ବନେ କମଳମା-
ନୟନୁ ଭ୍ରମ-ଲୋଚକ
ସଗରେ ପୋଛୁଲେ ନିଜ କରେ ଦେବ
ମିହିର ବଂଶଦ୍ୟୋତକ । (ପାବଣ୍ଡ)

ଏଠାରେ ସମାସୋକ୍ତି ଅଳଙ୍କାର ଅଛି । 'ଭ୍ରମଲୋଚକ'ରେ ରୂପକ ଅଳଙ୍କାର ମଧ୍ୟ ଅଛି । ତେଣୁ ଏଠାରେ ସମାସୋକ୍ତି ଓ ରୂପକର ସଙ୍କର ।

(୨) ମଞ୍ଜରମା କାଞ୍ଚୀନେମା-ସ୍ନାନେ-ଋତା
କାଞ୍ଚୀନେମା-ବେଣୀ-ପ୍ରଭ-ବେଣୀଯୁତା । (ଦରବାର)

ଏଠାରେ ଅନେକ ଗୁଡ଼ିଏ ଅଳଙ୍କାରର ସମନ୍ୱୟ ଦେଖାଯାଏ । 'ମଞ୍ଜରମା କାଞ୍ଚୀନେମା'ରେ ରୂପକ ଅଳଙ୍କାର (କ),

---

* ଯଦ୍ୟେତ ଏବାଲଙ୍କାରା ପରସ୍ପର ବମିଶ୍ରିତାଃ
ତଦା ପୃଥଗଲଙ୍କାରୌ ସଂସୃଷ୍ଟି ସଙ୍କରସ୍ତଥା । [ସାଃଦଃ]

'କାଞ୍ଚୀଜେମା-ବେଣୀ-ପ୍ରଭ-ବେଣୀ'ରେ ଉପମା (ଖ), 'କାଞ୍ଚୀ···ଯୁତା' ରେ ଅତିଶୟୋକ୍ତି (ଗ) ଓ ଅନୁପ୍ରାସ ଅଳଙ୍କାର ଅଛି ।

## ସଂସୃଷ୍ଟି *

ଯେଉଁଠାରେ ଏକାଧିକ ଅଳଙ୍କାର ନିରପେକ୍ଷ ଭାବରେ ଥାଆନ୍ତି, ସେଠାରେ ସଂସୃଷ୍ଟି ଅଳଙ୍କାର ବୋଲି କୁହାଯାଏ । ଏହି ମିଶ୍ରଣ ତିଳତଣ୍ଡୁଳ ନ୍ୟାୟ । ଏକତ୍ର ମିଶ୍ରିତ ଥିଲେ ହେଁ ପ୍ରତ୍ୟେକ ଅଳଙ୍କାରର ସ୍ୱତନ୍ତ୍ର ସତ୍ତା ପ୍ରତିଭାତ ହେଉଥାଏ; ଯଥା:—

(୧) ଅମଳ ନୀଳ କମଳରେ ଭ୍ରମର-ଯୁଗଳ ବସିବା ଦେଖି
ତୃଷ୍ଣା କୃଷ୍ଣାନନ-ନୟନ ବର୍ଦ୍ଧିତ ବୃତଗଣ ବୃଦ୍ଧି ଚନ୍ଦ୍ରିଁ,
ଶୁଣି କୀଚକ ନାଦ,
କୃଷ୍ଣ-ବେଣୁ ଗୀତ ମଣି ମୁଦ ।
(ବିଦଗ୍ଧ ଚିନ୍ତାମଣି)

ଏହି ପଦଟିରେ ନ, ଳ, ଣ ପ୍ରଭୃତି ବ୍ୟଞ୍ଜନ ବର୍ଣ୍ଣର ବାରମ୍ବାର ଆବୃତ୍ତି ହେତୁ ଅନୁପ୍ରାସ ଅଳଙ୍କାର ଅଛି । ପୁଣି ନୀଳକମଳରେ ଭ୍ରମର ଯୁଗଳ ଦେଖି ଓ ବାଉଁଶର ନାଦ ଶୁଣି ତାକୁ ଯଥାକ୍ରମେ ଶ୍ରୀକୃଷ୍ଣଙ୍କ ବଦନମଣ୍ଡଳରେ ଚକ୍ଷୁଦ୍ୱୟ ଓ କୃଷ୍ଣଙ୍କ ମୁରଲୀଧ୍ୱନି ମନେକରି ରାଧିକା ଆନନ୍ଦ ଅନୁଭବ କରିବା ବର୍ଣ୍ଣିତ ହୋଇଥିବାରୁ ଏଠାରେ

---

* ମିଥୋଽନପେକ୍ଷୟୈତେଷାଂ ସ୍ଥିତିଃ ସଂସୃଷ୍ଟିରୁଚ୍ୟତେ । [ସା:ଦ:]

ଭ୍ରାନ୍ତିମାନ ଅଳଙ୍କାର ମଧ୍ୟ ଅଛି । ଏହିପରି ଦୁଇଟି ଅଳଙ୍କାରର ମିଶ୍ରଣ ହୋଇଥିବାରୁ ଏଠାରେ ଅନୁପ୍ରାସ ଓ ଭ୍ରାନ୍ତିମାନ ଅଳଙ୍କାରର ସଂସୃଷ୍ଟି ।

(୨) ବିମ୍ବାଧରୀଙ୍କର ଚମ୍ପକ-ଅଙ୍ଗୁଳି
କମ୍ପନେ ମଧୁ ଝଙ୍କାର
ଉପୁଜିବା ଆଶେ କେନ୍ଦୁଖିରେ ଗଢ଼ା
ହେଉଅଛି ଲୌହତାର । (ପାଟଣୀ)

ଏଠାରେ 'ବିମ୍ବାଧରୀ' ଓ 'ଚମ୍ପକଅଙ୍ଗୁଳି' ଏହି ଅଂଶ ଦ୍ୱୟରେ ଲୁପ୍ତୋପମା ଅଳଙ୍କାର । କିନ୍ତୁ ସମ୍ପ୍ରଦାୟ ପଦଟିରେ ପର୍ଯ୍ୟାୟୋକ୍ତ ଅଳଙ୍କାର । ତେଣୁ ଏଠାରେ ଉପମା ଓ ପର୍ଯ୍ୟାୟୋକ୍ତ ଅଳଙ୍କାରର ସଂସୃଷ୍ଟି । ଦେଖାଯିବ ଯେ ଏହି ଅଳଙ୍କାରଦ୍ୱୟ ନିରପେକ୍ଷଭାବରେ ଅବସ୍ଥିତ ।

ଏଠାରେ ସ୍ମରଣ ରଖାଯାଇପାରେ ସଙ୍କର ଓ ସଂସୃଷ୍ଟି ଏ ଦୁଇଟି ସ୍ୱତନ୍ତ୍ର ଅଳଙ୍କାର ନୁହନ୍ତି । ଏ ଦୁଇଟି ହେଉଛନ୍ତି ମିଶ୍ର ଅଳଙ୍କାର । ମିଶ୍ରଣର ପ୍ରକୃତି ଭେଦରେ କେହି ସଙ୍କର ବା କେହି ସଂସୃଷ୍ଟି ନାମରେ ଅଭିହିତ ହୁଅନ୍ତି ।

ବିଭିନ୍ନ ଅଳଙ୍କାରର ଉଦାହରଣରୂପେ ଯେଉଁଗୁଡ଼ିକ ଦିଆ-ଯାଇଅଛି, ସେଥିମଧ୍ୟରୁ ଅନେକେ ସଙ୍କର ଓ ସଂସୃଷ୍ଟି ହୋଇପାରନ୍ତି ।

———

# ଛନ୍ଦ ବା ବୃତ୍ତ

**ରସକୁଲ୍ୟା**—ଏହି ରାଗରେ ପ୍ରତ୍ୟେକ ପଦ ଛଅଟି ପାଦ ବା ଚରଣରେ ବିଭକ୍ତ । ପ୍ରଥମ, ଦ୍ୱିତୀୟ ଓ ତୃତୀୟପାଦ ଏଗାର ଅକ୍ଷର ବିଶିଷ୍ଟ । ଏହି ପାଦମାନଙ୍କରେ ଷଷ୍ଠ ଓ ଏକାଦଶ ଅକ୍ଷର ଉପରେ ଯତିପାତ ହୁଏ । ଚତୁର୍ଥପଦ ଦ୍ୱାଦଶ ଅକ୍ଷରବିଶିଷ୍ଟ । ଏହାର ଷଷ୍ଠ, ଏକାଦଶ ଓ ଦ୍ୱାଦଶ ଅକ୍ଷରରେ ଯତିପାତ ହୁଏ । ପଞ୍ଚମ ପାଦ ନଅ ଅକ୍ଷରବିଶିଷ୍ଟ । ଏହାର ଷଷ୍ଠ, ଅଷ୍ଟମ ଓ ନବମ ଅକ୍ଷର ଉପରେ ଯତି ପଡ଼େ । ଷଷ୍ଠ ପାଦଟି ଏକୋଇଶି ଅକ୍ଷର-ବିଶିଷ୍ଟ । ଏହାର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ, ବିଂଶ ଓ ଏକବିଂଶ ଅକ୍ଷର ଉପରେ ଯତିପାତ ହୁଏ । ଚତୁର୍ଥ, ପଞ୍ଚମ ଓ ଷଷ୍ଠ ପାଦର ଶେଷଅକ୍ଷରଟି ସାଧାରଣତଃ ଯେ, ସେ ଏହିପରି ହୋଇଥାଏ ।

ଉଦାହରଣ—ବିଭୂଷଣ ପୁଷ୍ପେ’ ଯା କାନ୍ତ ଜାଣ’ ୬+୫
ବିଭୂଷଣ କରି’ କନ୍ୟାକୁ ଆଣ’ ୬+୫
ବାରଣ ଶିରେ ପ’ଦ ଦେଇ ଆସୁ’ ୬+୫
ବରଣ କର ର’ମ ମନ ତୋଷୁ’ ସେ’ ୬+୫+୧
ବୋଲି ଦେଲେ କଉ’ଶିକ’ ଯେ’ ୬+୨+୧
ବୋଲି ଦେଲା ପ୍ରାୟେ’ ଗୋଳି ଚନ୍ଦନକୁ’ ଢୋଇଲେ
ରଘୁବଂ’ଶିକ’ଯେ’ । ୬+୨+୬+୨+୧

**କଳହଂସ କେଦାର**—ଏହାର ଚାରିପାଦରେ ଏକପଦ ହୁଏ । ଏହାର ପ୍ରଥମ ଓ ତୃତୀୟ ପାଦ ଦ୍ୱାଦଶ ଅକ୍ଷରବିଶିଷ୍ଟ ଏବଂ

ଦ୍ୱିତୀୟ ଓ ଚତୁର୍ଥପାଦ ତ୍ରୟୋଦଶ ଅକ୍ଷରବିଶିଷ୍ଟ । ଅନ୍ୟ ଦୁଇ ପାଦପର ଏଥିରେ ବାରଅକ୍ଷର ପରେ 'ସେ' ବା 'ଯେ' ଲାଗି ତ୍ରୟୋଦଶ ଅକ୍ଷର ହୋଇଥାଏ । ପ୍ରଥମ ଓ ତୃତୀୟ ପାଦର ସପ୍ତମ, ନବମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ଅନ୍ୟ ଦୁଇପାଦରେ ସେହିପରି ସପ୍ତମ, ନବମ, ଦ୍ୱାଦଶ ଛଡ଼ା ତ୍ରୟୋଦଶ ଅକ୍ଷର ଉପରେ ମଧ୍ୟ ଯତିପାତ ହୁଏ ।

ଉଦାହରଣ—

କହଇ ମନ ଆରେ' ମୋ ବୋ'ଲ କର'   ୭+୨+୩
କଳା ଶ୍ରୀମୁଖ ବାରେ' ଦେଖି'ବା
ଭୂଲ'ରେ' । ୭+୨+୩+୧
କେତେ ବନକୁ ମନ' ବାନ୍ଧି'କୁ ଆଣ'   ୭+୨+୩
କ ଯେନ ଯିବୁ ଚୋର' ଛୁଟି'ଲେ
ଘଟ' ରେ' । ୭+୨+୩+୧

ଚତୁର୍ଥ ପାଦ ପରେ ସାଧାରଣତଃ ତୃତୀୟ ପାଦ ପୁନରାବୃତ୍ତି ହୁଏ ।

**କୁମ୍ଭକାମୋଦୀ**—ଏଥିରେ ବୃତ୍ତି ଚରଣରେ ଏକ ପାଦ ହୁଏ । ପ୍ରତି ଚରଣ ଅଠର ଅକ୍ଷରବିଶିଷ୍ଟ ଓ ଷଷ୍ଠ, ଦ୍ୱାଦଶ, ପଞ୍ଚଦଶ ଓ ଶେଷ ଅକ୍ଷର ଯତିପାତର ସ୍ଥାନ ।

ମାତାଙ୍କୁ ଦର୍ଶନ' କରି ରାମଚନ୍ଦ୍ର' କହନ୍ତି' ବଚନ' ୬+୬+୩+୩
ଭରତ ରାଜା ହେବ' ଆମ୍ଭଙ୍କୁ ବନକୁ' ପେଶିଲେ'ରାଜନ' ।
୬+୬+୩+୩

ଶୁଣି କଉଶଲ୍ୟା' ମୂର୍ଚ୍ଛିତା ହୋଇଣ' ପଡ଼ିଲେ' ମହୀର'
୬+୬+୩+୩
ଯେସନ ମୂଳ ଚ୍ଛେ'ଦନ କଲେ ପଡ଼େ' ଶୁଷ୍କ ତ'ରୁବର' ।
୬+୬+୩+୩

**ମାଳବ—**

ଏହାର ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦ ଚଉଦ ଅକ୍ଷରବିଶିଷ୍ଟ ଓ ଏହାର ଅଷ୍ଟମ, ଏକାଦଶ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ଉଦାହରଣ—

କମଳନୟନା ଅନା'ସୁତେ
ମୁ'ହିଁ' ଆସି' ୮+୩+୧+୨
ଅନେକ ଦୁଃଖ ପାଇଲି'
ହୋଇଣ' ବି'ଦେଶୀ' ୮+୩+୧+୨
ଏହାର ଯତିବିଭାଗ ନିମ୍ନ ପ୍ରକାରରେ ମଧ୍ୟ ହୋଇପାରେ ।

କମଳନୟନା ଅନା'ସୁତେ ମୁହିଁ ଆସି' ୮+୬
ଅନେକ ଦୁଃଖ ପାଇଲି' ହୋଇଣ ବିଦେଶୀ' । ୮+୬

ସ୍ମରଣ ରଖାଯାଇପାରେ ଯେ କଳସା, ବସନ୍ତ ଭୈରବ, ଆଶାବରୀ, ପଞ୍ଚମବରାଡ଼ି ଓ ନଳିନୀ ଗୌଡ଼ା ରାଗମାନଙ୍କରେ ମଧ୍ୟ ଚଉଦ ଅକ୍ଷରବିଶିଷ୍ଟ ଦୁଇପାଦରେ ଏକ ପଦ ହୁଏ । ଏମାନଙ୍କ ଯତିବିଭାଗ ମାଳବ ରାଗର ଅନୁରୂପ ।

## ମଙ୍ଗଳଗୁର୍ଜ୍ଜରୀ—

କେତେକଙ୍କ ମତରେ ଏହା ମାଳବର ଅନୁରୂପ ଅର୍ଥାତ୍ ଚଉଦଅକ୍ଷରବିଶିଷ୍ଟ । ଦୁଇପାଦରେ ଏହାର ଏକ ପଦ ହୁଏ ଓ ପ୍ରତ୍ୟେକ ପାଦର ଯତିବିଭାଗ ମାଳବ ରାଗ ପରି ୮+୬ କିମ୍ବା ୮+୩+୧+୨ ହୋଇପାରେ । ( ରାଜା ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ 'ଅଳଙ୍କାର ସାର' ଦ୍ରଷ୍ଟବ୍ୟ । )

ଅନ୍ୟ କେତେକଙ୍କ ମତରେ ମଙ୍ଗଳଗୁର୍ଜ୍ଜରୀ ରାଗରେ ଦୁଇ-ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦରେ ତେରଗୋଟି ଅକ୍ଷର ଥାଏ ଏବଂ ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ 'ଅବକାରସତରଙ୍ଗ'ରେ ତେର-ଅକ୍ଷର ବିଶିଷ୍ଟ ଦୁଇପାଦରେ ଏକ ପଦ ଗ୍ରହଣକରି ମଙ୍ଗଳଗୁର୍ଜ୍ଜରୀ ରାଗବୋଲି ନିର୍ଦ୍ଦେଶ କରିଅଛନ୍ତି; ଯଥା:—

ଅଜନନ୍ଦନ ନନ୍ଦନ' ଭ୍ରମଣ ବନ' ୮+୫
ଏମନ୍ତ ଉକତିବଶ' ଘନବରନ' । ୮+୫
(ଅ:ର:ତ:)

କିନ୍ତୁ ସେ 'ରସିକହାରାବଳୀ'ର ପ୍ରଥମ ଛାନ୍ଦର ରାଗ ମଙ୍ଗଳ-ଗୁର୍ଜ୍ଜରୀ ବୋଲି ନିର୍ଦ୍ଦେଶ କରିଥିଲେ ହେଁ ଏହାର ପ୍ରତ୍ୟେକ ପାଦ ଚଉଦ ଅକ୍ଷରବିଶିଷ୍ଟ; ଯଥା:—

ଜୟ ଜୟ ଜଗନ୍ନାଥ' ଦାରୁରୂପ ଧାରୀ' ୮+୬
ମାଳଗିରୀଶ ଗିରିଶ'-ବନ୍ଦମାୟୁ ହରି' ୮+୬

ଏହାଛଡ଼ା ଭଞ୍ଜକବିଙ୍କର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ପ୍ରଥମ ଗୀତଟି ମଙ୍ଗଳଗୀତ୍ତାତୀ ଗୀତରେ ଲିଖିତ । ଏହାର ଉଭୟ ପାଦ ଚଉଦ ଅକ୍ଷରବିଶିଷ୍ଟ ହେଲେ ହେଁ ଦ୍ୱିତୀୟ ପାଦରେ ଗୋଟିଏ ଅଧିକା ଅକ୍ଷର (ହେ,ଯେ,) ଯୁକ୍ତ ହୋଇଥିବାର ଦେଖାଯାଏ ।

ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ' ୧୪
ଯେଣୁ ନାରାୟଣଦେହୀ ତେଣୁ
ସେହି ନାମ' ହେ' । ୧ । ୧୪+୧

ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ' ୧୪
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମା ରୂପେ ଥାଇ' ଯେ' ।୨। ୧୪+୧

ଏଥିରୁ ଜଣାଯିବ ଯେ ଉପେନ୍ଦ୍ର ଭଞ୍ଜଙ୍କ ମତରେ ମଙ୍ଗଳ-ଗୀତ୍ତାତୀର ପାଦ ତେର ଅକ୍ଷରବିଶିଷ୍ଟ ହୋଇପାରେ, ଅଥବା ଚଉଦ ଅକ୍ଷରବିଶିଷ୍ଟ ହୋଇପାରେ । ଆହୁରି ମଧ୍ୟ ଗୋଟିଏ ପାଦରେ ଚଉଦ ଅକ୍ଷର ଓ ଅନ୍ୟ ପାଦରେ ଆହୁରି ଗୋଟିଏ ଅଧିକା ଅକ୍ଷର (ହେ, ଯେ, ସେ, ରେ) ମଧ୍ୟ ରହିପାରେ ।

ବିଚିତ୍ର ରାମାୟଣର ଲେଖକ ବିଶ୍ୱନାଥ ଖୁଣ୍ଟିଆ ମଙ୍ଗଳ-ଗୀତ୍ତାକୁ ଚଉଦ ଅକ୍ଷରବିଶିଷ୍ଟ ଦୁଇପାଦରେ ଏକ ପଦ ହୁଏ ବୋଲି ଗ୍ରହଣ କରିଅଛନ୍ତି; ଯଥା:—

ପ୍ରବେଶ ରାମ ଲକ୍ଷ୍ମଣ' ମୋର'ରି'ତୀର' ୮+୩+୧+୨
ଦେଖନ୍ତି ନିର୍ମଳ ଜଳ' ଅତି ମ'ନୋ'ହର' । ୮+୩+୧+୨

ଅନ୍ୟ କାହାର ମତରେ ଏଥିରେ ପ୍ରତି ପାଦର ଚଉଦଅକ୍ଷର ମଧ୍ୟରୁ ଏକାଦଶ ଓ ଶେଷ ଅକ୍ଷରରେ ଯତିପାତ ହୁଏ; ଯଥା:—

ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟ'କୁ ଦେଇ' ୧୧+୩
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମା ରୂ'ପେ ଥାଇ' । ୧୧+୩

**ବସନ୍ତ—**

ଏହାର ପ୍ରତ୍ୟେକ ପଦରେ ଛଅଗୋଟି ପାଦ ଥାଏ । ପ୍ରତ୍ୟେକ ପାଦରେ ୧୪ ଗୋଟି ଲେଖାଏଁ ଅକ୍ଷର ଥାଏ । ପ୍ରଥମ ପାଦର ଶେଷ ଅକ୍ଷର ସହିତ ଦ୍ୱିତୀୟ ପାଦର ଶେଷ ଅକ୍ଷର, ତୃତୀୟ ପାଦର ଶେଷ ଅକ୍ଷର ସହିତ ଚତୁର୍ଥ ପାଦର ଶେଷ ଅକ୍ଷର, ପଞ୍ଚମ ପାଦର ଶେଷ ଅକ୍ଷର ସହିତ ଷଷ୍ଠ ପାଦର ଶେଷ ଅକ୍ଷରର ଯତିପାତ ହୁଏ । ଆହୁରି ମଧ୍ୟ ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ; ଯଥା :—

ହରଧନୁ ଭଗ୍ନ ରାମ' ରାମନେହୀ ହର୍ଷ' ୮+୬
ଲେଖିଲେ ଚତୁରା ଆଳୀ' ଆଳ କରି ଶୋର୍ଷ' । ୮+୬
ଭୃଗୁରାମ ରାମବାଦ' ହଥୀରେ ଯେମନ୍ତ' ୮+୬
ବୋଧେ ରଘୁବର'ବର-ବରଣୀର ଚିନ୍ତ' ୮+୬
ମତ୍ଂଶଯ୍ୟା ଶଯ୍ୟାଶୋଭା' କୁଳଦୀପ ଛୁଇଁ' ୮+୬
ରାମ ସୀତା ଛନ୍ଦ ଚନ୍ଦ' ବଧାନେ ଚନ୍ଦାଇ' ୮+୬

(ଗୋଲୋକ-ଇନ୍ଦୁରେଖା)

[ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଦ୍ରଷ୍ଟବ୍ୟ] .

ଏହି ବସନ୍ତ ରାଗ ମାଳବ ରାଗ ସହିତ ତୁଳନୀୟ ।

'ଯତିପାଠ'ର ଲେଖକ ବସନ୍ତ ରାଗର ଲକ୍ଷଣ ଏହିରୂପେ ନିର୍ଦ୍ଦେଶ କରିଅଛନ୍ତି ।

ଏହାର ଦୁଇ ପାଦରେ ଏକ ପଦ ହୁଏ । ପ୍ରଥମ ପାଦରେ ୧୪ ଓ ଦ୍ୱିତୀୟ ପାଦରେ ୧୫ ଅକ୍ଷର । ପ୍ରଥମ ପାଦର ୪ର୍ଥ, ୮ମ ଓ ଶେଷ ଅକ୍ଷର ଉପରେ, ଦ୍ୱିତୀୟ ପାଦର ୪ର୍ଥ, ୮ମ, ୧୪ଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଦ୍ୱିତୀୟ ପାଦର ଏକାଦଶ ଅକ୍ଷର ଦୀର୍ଘ ଉଚ୍ଚାରିତ ହୁଏ; ଯଥା:—

ବାରହରି' ଲଙ୍କାପୋଡ଼ି' ଧୂମସ୍ତୋମ କସେ' ୪+୪+୬
ବିହରି ସେ' ହରି ସନ୍ଧ୍ୟା' ହୋଇକ ୪+୪+୬+୧

ଆକାଶେ' ଯେ' । (ବୈ:ବି:)

କେହି କେହି ଦ୍ୱିତୀୟ ପାଦରେ 'ଯେ' ଯୋଗକରି ନଥାନ୍ତି ।

[ 'ଯତିପାଠ' ପୁସ୍ତକ ଦ୍ରଷ୍ଟବ୍ୟ । ]

**ଶଙ୍କରାଭରଣ**—ଏହାର ପ୍ରତ୍ୟେକ ପଦ ଚାରି ପାଦବିଶିଷ୍ଟ । ପ୍ରଥମ, ଦ୍ୱିତୀୟ ଓ ଚତୁର୍ଥପାଦ ଚଉଦ ଅକ୍ଷରବିଶିଷ୍ଟ ଓ ପ୍ରତ୍ୟେକର ଅଷ୍ଟମ, ଏକାଦଶ, ଦ୍ୱାଦଶ ଓ ଚତୁର୍ଦ୍ଦଶ ଅକ୍ଷର ଉପରେ ଯତି ପଡ଼େ । ତୃତୀୟ ପାଦ ଆଠ ଅକ୍ଷରବିଶିଷ୍ଟ । ଏହାର ଦ୍ୱିତୀୟ, ଷଷ୍ଠ ଓ ଅଷ୍ଟମ ଅକ୍ଷର ଯତିପାତର ସ୍ଥାନ ।

ଉଦାହରଣ—

ସତ୍ୟପଥେ ଧର୍ମପଥେ' ଘେନ ଯା' ଅ' ମୋତେ'
୮+୩+୧+୨
ଭସାଅ ପରାଣ ମୋର' ତବପ୍ରେ'ମ' ସ୍ରୋତେ' ୮+୩+୧+୨
ପ୍ରଭୋ', ପରମ ଶ'ରଣ' ୨+୪+୨
ଏ ଜୀବନ ଶ୍ରୀଚରଣେ' କଲି ସ'ମ'ର୍ପଣ' । ୮+୩+୧+୨



Printed by Sri Jayaram Mahapatro, B.Com.
at Grantha Prakasini, Sutahat, Cuttack-1.